# ଗୁରୁପ୍ରସାଦ କବିତା

## ସମ୍ପୂର୍ଣ୍ଣ ସଂକଳନ

*ଲେଖକ :*

**ଗୁରୁପ୍ରସାଦ ମହାନ୍ତି**

*ପ୍ରକାଶକ :*

**ସୁବର୍ଣ୍ଣରେଖା**

କଟକରୋଡ, ଲକ୍ଷ୍ମୀସାଗର ଛକ, ଭୁବନେଶ୍ୱର-୭୫୧୦୦୬

*ଅକ୍ଷର ସଜ୍ଜା :* ଶାରଳା ଗ୍ରାଫିକ୍ସ

*ମୁଦ୍ରଣ :* ପ୍ରିଣ୍ଟେକ୍ ଅଫ୍‌ସେଟ୍, ଭୁବନେଶ୍ୱର

*ପ୍ରଥମ ସଂସ୍କରଣ :* ୨୦୦୫

*ମୂଲ୍ୟ :* ୯୦.୦୦



**GURUPRASAD KABITA**

*(Complete collection)*

*Author :*

**Guruprasad Mohanty**

*Publisher :*

**SUBARNAREKHA**

Cuttack Road, Laxmisagar Chhack, Bhubaneswar

*DTP :*

**Sarala Graphics**

*Printing :*

**Print Tech Offset,** Bhubaneswar

*First Edition :* **2005**

*Price :* ***Rs.*** **90.00**

**ISBN-81-87467-26-6**

# ଉତ୍ସର୍ଗ

କେଉଁଦିନ କେଉଁ ମୁହୂର୍ତ୍ତରେ ଅବା କେଉଁ ସେ ଲଗ୍ନରେ
ତୁମ ସାଥେ ହୋଇଥିଲା ଦେଖା
ଲାବଣ୍ୟବତୀର ଦେଶେ କିମ୍ବା କେଉଁ ତାଜମହଲରେ
ସେଦିନ କି ଖରାଥିଲା ଚିକ୍ ଚିକ୍
କିମ୍ବା ଥିଲା ବର୍ଷା ଅତି ଘୋର
ଆଜି ଠିକ୍ ମନେ ନାହିଁ
ଥିଲା କିନ୍ତୁ ମୋ ମନର କୃଷ୍ଣଚୂଡ଼ା
ନିଶ୍ୱାସର ସେ ରାଧାତମାଳ
ଆକାଶରେ ଜହ୍ନ ଥିଲା ତାରା ଥିଲା ବହୁତ ଅନେକ
ସବୁଥିଲା ଠିକ୍ ଠାକ୍
ତମର ସେ ବସନ୍ତର ଉନ୍ମେଷିତ ଫାଲଗୁନର
ଫୁଲର ମହକ
ଆଜି ସେ ଫାଲ୍‌ଗୁନର ପବନରେ ଝଡ଼ାପତ୍ର
ବାସ୍ତୁହରା କାପ୍ତାର କାନ୍ଦଣା
ଜଣାପଡ଼େ ହଜିଗଲା ସବୁ ମୋର କେଉଁ ଦେଶେ କେଉଁ ମରୁପଥେ
ବୁଝି ତ ହୁଏନା
ତୁମକୁ ମୁଁ ଭଲପାଏ ଏତେ ବେଶୀ ଭଲପାଏ
ଜାଣି ତ ନଥିଲି
ଚମ୍ପାଫୁଲ ମଉଳିଛି ଛାତି ଆଉ ନିଶ୍ୱାସର ନିଆଁ ତ ନିଭିଛି
ଆଜି ମୋର ଦିନ ସବୁ ଅସରନ୍ତି ବ୍ୟସ୍ତ ମୋର ମନ
ସବୁ ଲାଗେ ଖାଲି ଖାଲି
ସମୟ ମୋ ପାଇଁ ପୁଣି ନିଶ୍ଚଳ ନିଷ୍ଠୁର
ତୁମେ ବି ଆସିବ ଫେରି ସେ ମୃତ୍ୟୁର ସୀମା ଡେଇଁ
କେତେ ଘାସ, କେତେ ବିଲ, ଢେଉ କେତେ ପହଁରି ପହଁରି

ନତୁବା ମତେ ନେବ ଏ ପୁରରୁ ବୁକୁରେ ସାଉଁଟି ?
ତୁମର ଅପେକ୍ଷା ଆଉ ତୁମର ସେ ସ୍ମୃତି ସବୁ ଭଲ ପାଇବାର
ଅସହ୍ୟ ବେଦନା ଦିଏ ମୋର ଏହି ନିର୍ଜନତା ବ୍ୟାକୁଳ ମୋ ମନ ।

ଆସ ଆସ ଫେରି ଆସ ପ୍ରାଣ ମୋ ଅଥିର
ତୁମ ପରି ମୋ ସତ୍ତାର କ୍ଷୟମାନ ଏ ମୁହୂର୍ତ୍ତ ସ୍ଥିର ଓ ନିଭୃତ
ତୁମର ସେ ଚେତନାର ନିର୍ବାକ୍ ସମୟ ଘାରି ଏତେ ବେଶୀ
ଅହେତୁକ ସ୍ନେହ

ବ୍ୟଥିତ କରାଏ ମତେ ମୃତ୍ୟୁର ସେ ଚରମ ଶୂନ୍ୟତା
ଜହ୍ନ ତାରା ଆକାଶରୁ ମିଶେ ଆସି ଏ ମୋର ଆତ୍ମାରେ

ଏ ପୃଥିବୀ ଏ ମ୍ଳାନ ଆକାଶ

ଆଜି ମୋ ଆକାଶେ ଖରା ଯାଇଛି ମଉଳି
ଧୂସର ଏ ଖରା ଆଉ ଧୂସର ଗୋଧୂଳି
ସତେ କି ଆସିବ ଫେରି ଏ ଆକାଶ
ଏ ଜୀବନ ପରିଧିକୁ ଫେରି ?

ଅରୁଣା

# ପ୍ରାକ୍ କଥନ

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠିତ କବିମାନଙ୍କ ଭିତରେ ଗୁରୁପ୍ରସାଦ ବୋଧହୁଏ ଏକମାତ୍ର କବି ଯେ କି ସବୁଠାରୁ କମ୍ କବିତା ଲେଖିଛନ୍ତି ।

୧୯୪୫-୪୬ରୁ ୨୦୦୪ ପର୍ଯ୍ୟନ୍ତ ପ୍ରାୟ ୬୦ ବର୍ଷରେ ସେ ଲେଖିଥିବା ଓ ପ୍ରକାଶ ପାଇଥିବା ସମୁଦାୟ କବିତା ସଂଖ୍ୟା ୮୦-୮୫ରୁ ବେଶି ହେବ ନାହିଁ । ମନେ ହେବ, ସମୟ ଅନୁପାତରେ ଏ କୃତି ଯଥେଷ୍ଟ ନୁହେଁ । କିନ୍ତୁ ଯାହା ଆଶ୍ଚର୍ଯ୍ୟଜନକ ଓ ବିସ୍ମୟକର ତାହା ହେଲା, ସଂଖ୍ୟାରେ ସ୍ୱଳ୍ପ ହେଲେ ବି କବିଙ୍କର କୌଣସି କବିତାକୁ ଉପେକ୍ଷା କରି ହେବ ନାହିଁ । ପ୍ରତ୍ୟେକ କବିତା ନିଜସ୍ୱ ଘନିଷ୍ଠ ଆବେଗ, ଶକ୍ତି ଓ ପ୍ରଜ୍ଞାରେ ଦୀପ୍ତିମନ୍ତ ଓ ସାମଗ୍ରିକ ଭାବରେ ବର୍ତ୍ତମାନ ଜୀବନର ବିପୁଳ ବ୍ୟର୍ଥତା ସମ୍ପର୍କରେ ଏକ ଅସାମାନ୍ୟ ସର୍ଜନାତ୍ମକ ବିଶ୍ଳେଷଣ । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ଏହାହିଁ ଗୁରୁପ୍ରସାଦଙ୍କ ସ୍ଥିତି । ତାଙ୍କ କବିତାର ପ୍ରଚଣ୍ଡ ପ୍ରବାହରେ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତା ନିଜ ଗୁଣରେ ପ୍ରତିଷ୍ଠିତ ହେବା ସହିତ କାବ୍ୟ-ଦୃଷ୍ଟି ଓ କାବ୍ୟ-ସଂଗଠନରେ ଯେଉଁ ଶକ୍ତି ଓ ପରିଣତ ଅନୁଭବ ସମ୍ଭବ ହେଲା ତା ଫଳରେ ନୂତନ ନୂତନ ଦିଗ ଉନ୍ମୋଚିତ ହେଲା ଓ ଆଧୁନିକ ଓଡ଼ିଆ କବିତାର ଦିଗ୍‌ବଳୟ ପ୍ରସାରିତ ହୋଇଗଲା ।

ଗୁରୁପ୍ରସାଦଙ୍କର କବିତାଗୁଡ଼ିକୁ ମୁଖ୍ୟତଃ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ, ଓ ଏହି ଦୁଇଟି ପର୍ଯ୍ୟାୟର ଅନୁରୂପ ଦୁଇଟି କବିତା ବହି- 'ସମୁଦ୍ରସ୍ନାନ' (୧୯୭୦) ଓ 'ଆଶ୍ଚର୍ଯ୍ୟ ଅଭିସାର' (୧୯୮୮) । ଅର୍ଥାତ୍, 'ପ୍ରଜ୍ଞା' ତ୍ରୈମାସିକ ପତ୍ରିକାରେ ୧୯୬୦ରେ ପ୍ରକାଶ ପାଇଥିବା 'କାଳପୁରୁଷ' କବିତା ଓ ତାର ପୂର୍ବବର୍ତ୍ତୀ କବିତା ସବୁ 'ସମୁଦ୍ର ସ୍ନାନ'ରେ ସଂକଳିତ ହୋଇଛି, ଓ 'କାଳପୁରୁଷ'ର ପରବର୍ତ୍ତୀ କବିତାସବୁ ଯାହା 'ଆଶ୍ଚର୍ଯ୍ୟ ଅଭିସାର'ରେ ସଂକଳିତ ହୋଇଛି । କୁହାଯାଇ ପାରେ, 'କାଳପୁରୁଷ' କବିଙ୍କର ପ୍ରଥମ କାବ୍ୟ-ପର୍ଯ୍ୟାୟର ତୁଙ୍ଗୀଭୂତ ରଚନା ଓ

କବିଙ୍କର ସେହି ସମୟର କାବ୍ୟ-ଜୀବନର ପରିଣତି । 'କାଳପୁରୁଷ'ର ପୂର୍ବବର୍ତ୍ତୀ କବିତାମାନଙ୍କର ମୁଖ୍ୟ ଅନୁଭବ ସବୁ 'କାଳପୁରୁଷ'ରେ ସ୍ପଷ୍ଟତର ହେବା ସହିତ ଅଧିକତର ସଂଗଠିତ ହୋଇଛି ଓ ରୂପକ, ଚିତ୍ରକଳ୍ପ ଓ ମିଥ୍ ପ୍ରଭୃତିର ପ୍ରତୀକତାରେ ଅଧିକତର କେନ୍ଦ୍ରୀଭୂତ ହୋଇଛି । ଏହି ଅନୁଭବ ଗୋଟିଏ ଦିଗରୁ ଜୀବନ ଓ ମୃତ୍ୟୁ ସମ୍ପର୍କରେ, ବିଶେଷ କରି ଜୀବନରେ ମୃତ୍ୟୁର ଚେତନା ସମ୍ପର୍କରେ ବା ବିପରୀତ ଭାବରେ ମୃତ୍ୟୁର ପରିସରରେ ଜୀବନର ସମ୍ଭାବନା ସମ୍ପର୍କରେ; ଓ ଅନ୍ୟ ଦିଗକୁ କବି-ସତ୍ତାର ନିଃସଙ୍ଗତା, ଦ୍ୱନ୍ଦ୍ୱ, ଅସ୍ଥିରତା ଓ ସ୍ଥିତି-ଅସ୍ଥିତିର ବିଚାର ଓ ବିଶ୍ଳେଷଣରେ ନିହିତ । 'କାଳପୁରୁଷ' ପରେ କାବ୍ୟାନୁଭୂତିରେ ପରିବର୍ତ୍ତନ ଆସିଛି । ମୁଖ୍ୟ ଧାରାର ପ୍ରଭାବ ନିରବଚ୍ଛିନ୍ନ ଭାବରେ ରହିଥିଲେ ବି ତାର ତୀବ୍ରତା ଅପେକ୍ଷାକୃତ ମୃଦୁ ଓ ସହନଶୀଳ ହେବା ସଂଗେ ସଂଗେ କେତେକ ନୂତନ ନୂତନ ଅନୁଭବ ସଂଯୋଜିତ ହୋଇଛି ବା ରହି ଆସିଥିବା କେତେକ ଅନୁଭବକୁ ଅଧିକ ଗୁରୁତ୍ୱପୂର୍ଣ୍ଣ ଭାବରେ ପ୍ରତିପାଦିତ କରାଯାଇଛି । ଯେପରିକି ଉଦାହରଣ ସ୍ୱରୂପ, ମୁକ୍ତି ବା ମାନସିକ ମୁକ୍ତିର ଅନୁଭବ, ଯାହାକି ମନକୁ ଅମଙ୍ଗଳ, ପୀଡ଼ିତ ଓ ନିଃସଙ୍ଗତାର ପରିସରରୁ ମଙ୍ଗଳ ଓ ମୁକ୍ତିର ଉନ୍ମୁକ୍ତ ଆୟତନକୁ ନେଇ ଆସେ । ସେହିପରି ମୃତ୍ୟୁ ସମ୍ପର୍କରେ ଏକ ସ୍ପଷ୍ଟ ସଚେତନତା, ଯାହାକୁ ସାମାଜିକ ଗ୍ରାହ୍ୟର ପରିବେଶ କୁହାଯାଇପାରେ ଓ ଯାହାକୁ କେତେକ ପରିମାଣରେ ସ୍ଥୁଳ ରୂପରେ ପରିବେଷଣ କରାଯାଇଛି । ସାଧାରଣ ଭାବରେ ଏହି କବିତା ଗୁଡ଼ିକରେ ଦୁଇଟି ଧାରା ଲକ୍ଷ୍ୟ କରାଯାଇ ପାରେ, ଯାହାକି ଆମେ ପୂର୍ବବର୍ତ୍ତୀ କବିତାମାନଙ୍କରେ ବି ଦେଖୁ । ଗୋଟିଏ ସୌନ୍ଦର୍ଯ୍ୟ ପ୍ରତି ଆଗ୍ରହ ଓ ସଚେତନତା, ବିଶେଷ କରି ପ୍ରକୃତିରେ ଓ ପ୍ରକୃତିର ପୁଷ୍ଟତାରେ, ଓ ଏହା ସହିତ ମିଶିକରି ରହିଛି ଆନନ୍ଦ ଓ ପ୍ରଶାନ୍ତିର ମନୋଭାବ । ଦ୍ୱିତୀୟଟି, ସତ୍ତାର କ୍ଳାନ୍ତି, ବ୍ୟଥା ଓ ନିଃସଙ୍ଗତାର ଅନୁଭବ । କବିତା ସଂଗଠନରେ ଏ ଦୁଇଟି ଧାରା ବିଚ୍ଛିନ୍ନ ନୁହେଁ, ପରସ୍ପର ଉପରେ ନିର୍ଭରଶୀଳ, ଓ କାବ୍ୟ- ଦୃଷ୍ଟିଭଙ୍ଗୀରେ ଉଭୟ ସମାନ ଗୁରୁତ୍ୱପୂର୍ଣ୍ଣ ଓ ଉଭୟର ପାରସ୍ପରିକ ସଂହତିରେ ହିଁ ଗୁରୁ ପ୍ରସାଦଙ୍କର କାବ୍ୟ-ଅନୁଭୂତି ପ୍ରସାରିତ ହୋଇଛି ।

ଗୁରୁ ପ୍ରସାଦଙ୍କର ଦେହାନ୍ତ ପରେ ତାଙ୍କ ସବୁ ପ୍ରକାଶିତ ଓ ଅପ୍ରକାଶିତ କବିତାର ଗୋଟିଏ ସଂପୂର୍ଣ୍ଣ ସଂକଳନ ପ୍ରକାଶ କରିବାପାଇଁ ଚିନ୍ତା କରାଗଲା ଓ ତାର ଫଳଶ୍ରୁତି

ହେଉଛି ଏହି ଗ୍ରନ୍ଥ-ଗୁରୁପ୍ରସାଦ କବିତା । ଏଠାରେ ତାଙ୍କର ସବୁ ମିଳୁଥିବା କବିତା ମୁଖ୍ୟତଃ ପାଣ୍ଡୁଲିପି ସୂତ୍ରରୁ ସଂଗ୍ରହ କରି ଏକାଠି କରାଯାଇଛି, ଓ ସମୁଦାୟ କବିତା ସଂଖ୍ୟା ୭୩ । ସେ ୧୯୪୦ ପୂର୍ବରୁ ଲେଖିଥିବା କେତେକ କବିତାର ସୂଚନା ମିଳୁଥିଲେ ବି, ସେସବୁ ଲଭ୍ୟ ନୁହେଁ । ସେଗୁଡ଼ିକ ହେଲା 'ଅପରାଜିତା', 'ସପନତରୀ', 'ଅସ୍ତରାଗ', 'ଅଲାଜୁକୀ' ଓ 'ସଜଳ ଆଖି ନୀରେ' । ସେସବୁ କବିତା ଓ ଅନ୍ୟ କୌଣସି କବିତା କୌଣସି ପତ୍ରପତ୍ରିକା ସୂତ୍ରରୁ ପାଇ କୌଣସି ସହୃଦୟ ପାଠକପାଠିକା ଯଦି ଆମକୁ ଜଣାନ୍ତି ଆମେ ସେସବୁ ଆନନ୍ଦରେ ଏହି ଗ୍ରନ୍ଥର ପରବର୍ତ୍ତୀ ସଂସ୍କରଣରେ ଅନ୍ତର୍ଭୁକ୍ତ କରି ପାରିବୁ । ଏହି ପ୍ରସଙ୍ଗରେ ଗୁରୁ ପ୍ରସାଦଙ୍କର ଗୋଟିଏ ନିର୍ଦ୍ଦିଷ୍ଟ କବିତା କଥା ଉଲ୍ଲେଖ କରାଯାଇ ପାରେ । କବିତାଟିର ଶୀର୍ଷାଙ୍କ 'ଯାତ୍ରା' । ବହୁ ବର୍ଷ ଧରି ଗୁରୁପ୍ରସାଦ ଏହି କବିତାଟିର ପରିକଳ୍ପନା କରୁଥିଲେ ଓ ବଂଧୁମାନଙ୍କ ସହିତ ବାରମ୍ବାର ଆଲୋଚନା କରିଥିଲେ । ସମୟକ୍ରମରେ ଓ ବିଭିନ୍ନ ପରିସ୍ଥିତିରେ ଗୋଟିଏ ସ୍ଥାନର ଲୋକେ କିପରି ଅନ୍ୟସ୍ଥାନକୁ ଯାଆନ୍ତି ଓ ଜାତି, ଗୋଷ୍ଠୀ, ବ୍ୟକ୍ତି ଭେଦରେ ଏହି ଦେଶାନ୍ତୀକରଣର ସମ୍ଭାବ୍ୟ ପରିଣତି ଓ ଏପରି ଯାତ୍ରାର ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଆୟତନ କ'ଣ ହୋଇପାରେ ଓ କେତେଦୂର ମଣିଷର ସ୍ଥିତିକୁ ପ୍ରଭାବିତ କରି ପାରେ, ଏ ସବୁ ହିଁ ତାଙ୍କ ପରିକଳ୍ପିତ କବିତା ସଂଗଠନର ମୁଖ୍ୟ ଉପଜୀବ୍ୟ ଥିଲା । ହୁଏତ ସଂପୂର୍ଣ୍ଣ କବିତାର ଖସଡ଼ା ତାଙ୍କ ମନରେ ପ୍ରସ୍ତୁତ ହୋଇ ଯାଇଥିଲା । ଅନ୍ତତଃ ସେ ଛାଡ଼ିଯାଇଥିବା ଛୋଟ ଛୋଟ ନୋଟ୍ ଓ ଟିପ୍‌ପଣୀରୁ ତାହାହିଁ ମନେ ହୁଏ । ଏ କବିତାକୁ ସେ 'କାଳପୁରୁଷ' ପରି ଗୋଟିଏ ଦୀର୍ଘ କବିତା କରିବାର ପରିକଳ୍ପନା କରିଥିଲେ । ଏ କବିତା ସଂପୂର୍ଣ୍ଣ ହୋଇ ପାରିଥିଲେ ବିଶ୍ୱାସ ଓଡ଼ିଆରେ ଗୋଟିଏ ଅସାମାନ୍ୟ କବିତାର ଜନ୍ମ ହୋଇ ପାରିଥାନ୍ତା । କିନ୍ତୁ ତା ହେଲାନାହିଁ ; 'ଯାତ୍ରା'ର ଯେଉଁ ଅଳ୍ପ କିଛି ସେ ଲେଖିଥିଲେ, ସେହି କ୍ଷୁଦ୍ର ଅଂଶକୁ 'ଯାତ୍ରା' ଶୀର୍ଷାଙ୍କରେ ଏଠାରେ ମୁଦ୍ରିତ କରାଯାଇଛି । ସେହିପରି ଗୁରୁପ୍ରସାଦଙ୍କର ସର୍ବଶେଷ କବିତା ସଂପର୍କରେ କିଛି ନିରୂପିତ ସୂଚନା ନାହିଁ । ତାଙ୍କର ପତ୍ନୀ ଶ୍ରୀମତୀ ଅରୁଣାଙ୍କ ମତରେ 'ମୋର ସବୁ ସ୍ନେହ' ବୋଧହୁଏ ଶେଷ କବିତା । ତେଣୁ ସେହି କବିତାଟିକୁ ଗ୍ରନ୍ଥର ସର୍ବଶେଷ କବିତା ଭାବରେ ମୁଦ୍ରିତ କରାଯାଇଛି । 'ଯାତ୍ରା' ପରି ଅନ୍ୟ ଗୋଟିଏ ଦୁଃଖଦାୟକ ଅନୁଭୂତି ହେଉଛି ତାଙ୍କର ବୋଡ଼ଲେଆର କବିତାର ଅନୁବାଦ । ସେ

ବୋଡ଼ଲେଆରଙ୍କର ଅନେକ ଗୁଡ଼ିଏ କବିତାର ଅନୁବାଦ କରିଥିଲେ । କିନ୍ତୁ ସେ ପାଣ୍ଡୁଲିପି କୁଆଡ଼େ ଗଲା, କଅଣ ହେଲା ସେ ନିଜେ ବି ଜାଣି ପାରି ନଥିଲେ। ସେ ଅନେକ ଥର ସେକଥା କହିଛନ୍ତି । କିନ୍ତୁ ବୋଡ଼ଲେଆର ପାଣ୍ଡୁଲିପି ଫେରିପାଇବା ଆଉ ସମ୍ଭବ ହେଲା ନାହିଁ ଓ ଗୋଟିଏ ଉଜ୍ୱଳ ରତ୍ନ ଓଡ଼ିଆ ସାହିତ୍ୟରୁ ସବୁଦିନ ପାଇଁ ହଜିଗଲା ।

ଗୁରୁ ପ୍ରସାଦ ଯୁଗସ୍ରଷ୍ଟା କବି । ତାଙ୍କର ନୂତନତା ତାଙ୍କର ଅନୁଭବରେ, ତାଙ୍କର ଭାଷାରେ, ତାଙ୍କର ଦୃଷ୍ଟିଭଙ୍ଗୀରେ । ତାଙ୍କର କବିତାର ଅନ୍ୟତମ ପ୍ରଧାନ ଗୁଣ- ଯାହାକୁ ସଂସ୍କୃତରେ କୁହାଯାଏ ପ୍ରସାଦ ଗୁଣ । କବିତାଗୁଡ଼ିକୁ ବାରମ୍ୱାର ପଢ଼ିଲେ ମଧ୍ଯ ତା'ର ନୂତନତା ଓ ସଜୀବତା ହ୍ରାସ ପାଏନାହିଁ ଓ କବିତାର କଥା ବୁଝିବା ଆଗରୁ ତାର ଆବେଦନ ଓ ଶକ୍ତି ପାଠକର ମନକୁ ଦୃଢ଼ ଭାବରେ ଆଚ୍ଛନ୍ନ କରି ରଖେ ।

ଯତୀନ୍ଦ୍ର ମୋହନ ମହାନ୍ତି

# ସୂଚୀପତ୍ର

# ଚମ୍ପାଫୁଲ

ଚମ୍ପାଫୁଲ ମହକରେ ବାଟ ଭୁଲି ସମୁଦ୍ରର ଢେଉ
ଆସିଥିଲା କୂଳ ଡେଇଁ ଶୁଖିଥିଲା ଭରାନଈ ଛାତି
ପଥର ତରଳି ଥିଲା, ମଶାଣିର ଭୂତପ୍ରେତ ଛାଡ଼ି
ରଜବତି କନ୍ୟା ଲାଗି ଯୋଗୀ ଥିଲା ମଦନରେ ମାତି ।

ଚମ୍ପାଫୁଲ ହାତେ ଧରି ମନାସିଲା ଯାଦୁକରୀ ଥରେ
ପଥର ପାଲଟି ହେଲା ରଜାପୁଅ, ହାଡ଼ସବୁ ହେଲା ମୁକ୍ତାଫୁଲ
ରାଜାଝିଅ ବେଣୀଫୁଲ ଖସିଗଲା ସୁଏ ସୁଏ ଭାସି
ଗୋଟିଏ ଫୁଲରେ ପୁଣି ହେଲା କୋଟି ମଣିଷର ମୂଳ ।

ଚମ୍ପାଫୁଲ ମହକରେ ପଡ଼େ ସେ ଯେ ଦାରୁଣ କୁହୁକ
ରକ୍ତେ ଯାଏ ନିଆଁ ଲାଗି, ଛାତି ଆଉ ନିଶ୍ୱାସରେ ନିଆଁ
ଛାତି ଆଉ ନିଶ୍ୱାସରେ ନିଆଁ ସେ ଯେ ଦେହେ ଦେହେ ବିଜୁଳି ଚମକ
ବିଜୁଳି ଚମକ ସେ ଯେ ବଣ ନିଆଁ, ସବୁ ଯାଏ ଛିନ୍ନଭିନ୍ନ ହୋଇ,
ପୃଥିବୀ ଛାତିରେ ଲୋଟି ପୋଡ଼ିଯାଏ ଜଳିଯାଏ ସବୁ
ମାଂସ ଫୁଟେ ଫୁଲ ହୋଇ ମନ ପଡ଼େ ରୋମାଞ୍ଚରେ ଶୋଇ ।



# କପୋତ କପୋତୀ

"ଏ ରାତିର ଏତେ ତାରା ସ୍ମୃତି ଆଣେ ତୁମ ସାଥେ ଯୁଗ ଯୁଗ ଅନାଦି ଯୁଗର
ତୁମରି ପାଖରେ ବସି ମୁଁ ଭାବେ ହଠାତ୍ ଯଦି ବାଲିରେ ସ୍ମୃତି ବୁଣି ବୁଣି
ଏ ରାତି ବିଛାଇ ଦିଏ ସ୍ୱପ୍ନ ଆଉ ଯୁଗ ଯୁଗ କଞ୍ଚ କଞ୍ଚ ତାରା ଆଉ ତାରା
ତୁମରି ଭ୍ରୂଲତା ତଳେ ମିଶିଯାଏ ଦିଗ୍‌ବଳୟ,
ରାଧାନାଥ ରାୟ ଆଉ ସଚ୍ଚି ରାଉତରା...."
ସେ କହିଲା, "ଏହି ମୋର ସିଲ୍‌କ ଶାଢ଼ୀ ଆକାଶୀ ରଙ୍ଗରେ
ଆକାଶରୁ ଖସିଆସେ ତାରା ଆଉ ସଚ୍ଚି ରାଉତରା ।"

"ଏ ଅନ୍ଧାର ଶୋଇପଡ଼େ ଢାକିଢୁକି ନିର୍ବିବାଦେ ନିଶବଦ ଘୋଡ଼ିଘାଡ଼ି ହୋଇ
ନିଶଢ ଚଇତ୍ର ଯାଏ ଗଳି ଗଳି ରାସ୍ତା ରାସ୍ତା ଘୋଡ଼ାଗାଡ଼ି ରିକ୍‌ସାଗାଡ଼ି ଚଢ଼ି
ଇଲେକ୍‌ଟ୍ରିକ୍ ଆଲୁଅରେ ସାବୁନ୍ ଆଉ ବାସ୍ନାତେଲ ଗୁଡ଼ାଖୁ ଓ ହଇଦର ବିଡ଼ି
ଚୈତ୍ରର ସପନ ନେଇ ତୁମଠାରୁ ଇନ୍ଦ୍ରଜାଲ ନେଇ
ଗାନ୍ଧି ଟୋପି ପିନ୍ଧି ଚାଲେ ଏ ରାସ୍ତାରେ ଭିଡ଼ ଠେଲି ଠେଲି ।"
ସେ କହିଲା, "ଦୁଷ୍ଟ ତମେ ଦୁଷ୍ଟ ଭାରି ସତ ମିଛ କଥା କହିପାର
ଚୋରପରି ମୋ ପାଖରୁ ଅର୍ଥନୀତି ରାଜନୀତି ସୋସାଲିଜ୍‌ମ୍ କାଢ଼ିନେଇ ପାର ।"

"ଏ ରାତିରେ ସୀମା ନିଭେ ଭଦ୍ରତାର ଶିଷ୍ଟତାର ଗାନ୍ଧିବାଦ
ସାମ୍ୟବାଦ ଆଉ ପ୍ରେମ କରିବାର ସୀମା
ରକ୍ତ ସିନା ପାଣି ଫାଟେ ତଥାପି ଆଖିରେ ଘୋଟେ ଭାରିହୋଇ
ଏ ରାତିର ଫୁଲଭରା ବିଜନ ନୀଳିମା,
ମୁଁ ଶୁଣେ ଅସ୍ପଷ୍ଟ ପାଦ ଶହ ଶହ ହଜିଯାଏ ପାଣି ଖୋଜି ମାଟି ଖୋଜି
ଏ ବାଲିର ଅନ୍ଧାର ଭିତରେ
ତଥାପି ଆଖିରେ ମୋର ଅପନ୍ତରା ଏ ଭୂଇଁରେ ନେଳି ସିଲ୍‌କ ଶାଢ଼ୀ

ଆଉ ତୁମର ଏ ବିଜନ ନୀଳିମା ।"
ସେ କହିଲା, "ଭଲପାଅ ସତେ ତୁମେ ଏତେ ଭଲପାଅ
ମୋ ପାଖରେ ବସି ସତେ ତୁମର ଏ ସିନିସିଜିମ୍ ଧୂପ ଆଉ
ହେମପୁଷ୍ପ ସବୁ ଭୁଲିଯାଅ ।"
ମୁଁ କହିଲି, "ମିସ୍ ତୁମେ ଚିରନ୍ତନ ମିସ୍ ରାୟ
ମିସ୍ ସବୁ ନିଖିଳର ସପନ ଭିତରେ
ଆଜି ତେଣୁ ଆକାଶର ବାଦ ଆଉ ଏ ବାଲିର ଭିତରେ
ମୁଁ ତୁମକୁ ପ୍ରେମ କରେ, ଚିଠି ଲେଖେ, ତୁମର ମୁଁ ସମାଧାନ,
ତୁମର ମୁଁ ସମନ୍ୱୟ କରେ-
ତୁମରି ବେଣୀରୁ ଦେଖେ ଚୈତ୍ର ଯାଏ ଭିଡ଼ ଠେଲି
ତୁମରି ଆଖିରୁ ଆସି ଚୈତ୍ର ଋତୁ ଭିଡ଼ ଠେଲି
ଅହିଂସାର ଜିପ୍ ଗାଡ଼ି ଚଢ଼େ ।"
ସେ କହିଲା, "ଦୁଷ୍ଟ ତୁମେ ଭାରି ଚାଲାଖ୍ ଭାରି ଫାଜିଲ୍
ଭାରି ଭଲ କଥା କହିଜାଣ
ତୁମରି ପ୍ରେମରେ ଆଜି ଭୁଲିଯାଏ ସତୀତ୍ୱ ମୁଁ ଅର୍ଥନୀତି ରାଜନୀତି
ଆଉ ମୋ'ର ନାରୀ ଜାଗରଣ ।"



# ଗୋବର ଗଣେଶ

ରହିଯାଏ ଅଭାବ ତଥାପି
ବିବର୍ଣ୍ଣ ବେଳାର ପରେ ଢେଉ ପରେ ଭାଙ୍ଗେ ଯେତେ ଢେଉ
ବାଲିର ପାଚିରୀ ଯାଏ ଛିନ୍ନଭିନ୍ନ ସମତୁଲ ହୋଇ ।
ଓଠର ଗୋଲାପି ରଙ୍ଗ ଏ ଆକାଶ ଶୋଷିନେଲା ପରେ
ଯୋତାର ଗୋଲାପି ଦୃଶ୍ୟ ଏ ଢେଉରେ ଭାସିଗଲା ପରେ
ନିଛାଟିଆ ଗଳିମୋଡ଼ ଛାଇ ତାର ଗିଳିଦେଲା ପରେ
ରହିଯାଏ ଅଭାବ ତଥାପି,
ଏ ଛାତି ଭିତରେ ମୋର ନିଶ୍ୱାସରେ ଶ୍ୱାସ ପ୍ରଣାଳୀରେ
ମସ୍ତିଷ୍କ ଭିତରେ ମୋର ସବୁ ସୁଅ ସବୁ ଚେତନାରେ
ରହିଯାଏ ତଥାପି ଅଭାବ
ଝଡ଼ର ଓ ତୋଫାନର ବସନ୍ତରେ କୋଇଲି ଡାକର
ବିବର୍ଣ୍ଣ ବେଳାର ଢେଉ ଏ ମନରେ ଗୋଟିଏ ପ୍ରଶ୍ନର ।
ଆଜି ଯେବେ ସନ୍ଧ୍ୟାବେଳେ ପତ୍ରସବୁ ଝଡ଼ି ଝଡ଼ି ପଡ଼େ
ନିଛାଟିଆ ଏ ଗଳିରୁ ସନ୍ଧ୍ୟାଯାଏ ଲୁଚି ଲୁଚି ଛପି ଛପି ପ୍ରେମିକର ପରି,
ମୁଁ ବସେ ଝରକା ପାଖେ ଢାକିଢୁକି ଗୋଲ କରି ରଖି ମୋର ଛାତି ପକେଟରେ,
ମଲ୍ଲିହାର ଚମ୍ପାକଢ଼, ଶାଢ଼ୀ ତାର ବ୍ଲାଉଜ୍ ତାର ଗୋଲ ଛାତି କଳା ଆଖି ତାର,
ରୁମାଲରେ ଢାକିଢୁକି ମନ ମୋର ଦେହ ମୋର ଆତ୍ମା ମୋର ମୋ ପୁରୁଷକାର ।
ପତ୍ରସବୁ ଝଡି ଝଡ଼ି ଯାଏ
ନିଛାଟିଆ ଏ ଗଳିରେ ସାଉଁଟି ସାଉଁଳି ଧୂଳି ମନ ମୋର ଦେହ ଖୋଜିଯାଏ
ଦେହ ମୋର ପ୍ରାଣ ଖୋଜିଯାଏ ।
ଆଖି ତାର ଗାଢ଼ କଳା
ତାରୁକଳା ଅଭାବ ମୋ ଠାରେ
ଗୋଲ ତାର ଛାତି ତଳେ ବସନ୍ତ ବା ଯଦି ଉଙ୍କିମାରେ
ମୋ ଠାରେ ଆକାଶ ଠାରୁ ବହୁଦୂର ବସନ୍ତ ସୁଦୂର ।

ଆଜି ପୁଣି ମତେ ଲାଜମାଡ଼େ
ଆଜି ପୁଣି ଚମକି ମୁଁ ଥକା ହୋଇ ଚାହେଁ ଝରକାରେ
ମୁଠାରେ ଦେବାକୁ ଚାପି ଏହି ଗଳି ଏହି ଛକ ଏହି ଶାଢ଼ୀ ଦାମୀ ଗହଣାରେ
ଥିଏଟର ସିନେମାର ସବୁ ସିଟ୍ ସବୁ ଟେବୁଲ ସବୁ ହୋଟେଲର,
ଆଜି ପୁଣି ମତେ ଲାଜମାଡ଼େ,
ଆଜି ପୁଣି ଅକ୍ଲାନ୍ତ ମୁଁ ଚେଷ୍ଟାକରେ ହେବାକୁ ଚିକ୍‌କଣ
ରୁମାଲରେ ମୁହଁ ପୋଛେ ପଞ୍ଜାବୀରେ ଲଗାଏ ଅତର
ଆଗରେ ଆରସି ରଖି ମୁଲାଏମ୍ ହସିବାକୁ ଶିଖେ ।

ମୁଁ ନୁହେଁ ଧୂପର ହିରୋ, ଗାର୍ଲ୍‌ସ୍କୁଲ, ଚୁମ୍ବନ, ବା ଚମ୍ପୁର ନାୟକ
ଚାରୁକଳା ଅଭାବ ମୋ ଠାରେ
ତାର ସିଲ୍‌କ ଲୁଗା ତଳୁ ଗୋଲ ଛାତି ଯେବେ ଉଙ୍କିମାରେ ।

ଧନୁରେ ମୁଁ ଯୋଖିନାହିଁ କାଗଜ ବା କ୍ରୋଟନ ସାୟକ
ମୁଁ ଜାଣେନା ବିକାହୁଏ କଟକର କେଉଁ ଦୋକାନରେ
ପ୍ରେମର ପ୍ରଥମ ଫୁଲ ନିଳୋତ୍ପଳ ବକୁଳ ଅଶୋକ,
ନାଟର ଦୂତ ମୁଁ ମୋର ନିଶ ମୋଡ଼ିମାଡ଼ି ଧରି ଢୋକ ଗିଳି ଗିଳି
ଆଣିଦେବା ରାଜ୍ୟର ଖବର
ଥିଏଟର ସିନେମାରେ ନୂଆ ଫେସନ ଶାଢ଼ୀ ବ୍ଲାଉଜର
ଖୁବ୍ ବେଶୀ ହେଲେ କେବେ ଟେଲିଫୋନ କିମ୍ବା ଡାକଘର ।

ମୁଁ ଯଦି ହଠାତ୍ ଦିନେ ଜଳିଯାଏ
ଏ ଆକାଶ ଯଦି ଯାଏ ଆଖିରେ ମୋ ସଙ୍କୁଚିତ ହୋଇ
କାଶ ଯାଏ ଭଲହୋଇ ଆଖିରେ ମୁଁ ଲଗାଏ ଚଷମା
ତା ଚଷମା ଭିତରକୁ ସିଧାହୋଇ ଅନାଇବା ପାଇଁ
ସମୟକୁ ଜାକିଜୁକି ସମସ୍ୟାରେ ଚାପି ଦେବାପାଇଁ
ମୁଁ ଯଦି ତରାଟେ ଆଖି, ମୁଁ ଯଦି ବା ନିଶ ଦାଢ଼ି ରଖେ, ମୁଁ କହେ ତାହାକୁ
ମୁଁ ପଢ଼ିଛି ଉପନ୍ୟାସ, ମୁଁ ପଢ଼ିଛି ଇଂରାଜୀ ନାଟକ
ମୁଁ ଜାଣିଛି ଏ ରକ୍ତରେ ଶୋଇଥାଏ ଆଦିମ ଅସଭ୍ୟ
ମୁଁ ଜାଣିଛି ହଜିଥିବା ରୁମାଲରୁ ଛୁରୀ ଉଠେ ରକ୍ତମୁହାଁ ହୋଇ

ମୁଁ ଜାଣିଛି ବାଘ, ଭାଲୁ, ନଖ ଆଉ ଦାନ୍ତର ବିଚାର,
ସେ ଯଦି କେବଳ ହସେ
ସେ ଯଦି କେବଳ
ପାପୁଲିରେ ମୁହଁ ରଖି ସାବଲୀଳ ଗ୍ରୀବା ଭାଙ୍ଗୀ କୁରରୀର ପରି
ସେ ଯଦି କେବଳ କୁହେ ଭୁଲ୍ ସବୁ, ଗଧ ତୁମେ,
ବୋକା ତୁମେ, ଓଲୁ ତୁମେ
ଚାଳିଶାର ଭେଳିକି ତୁମର
ସେ ଯଦି ଝରଣା ଯାଏ ହସି ହସି ଲୋଟି ତାର ବିଛଣା ଉପରେ
ଛେପ ଢୋକି ତଣ୍ଟି ଶୁଖିଯାଏ ।

ଆଖି ତାର ରହିଥିବ ଛାତି ତାର ଥିବ ଗୋଲ ହୋଇ
ସିନେମାକୁ ଯିବା ତାର କେବେହେଲେ ବନ୍ଦ ହେବ ନାହିଁ
ରୁମାଲରେ ମୁହଁ ପୋଛା ଆଉ ମୋର ସନ୍ଧ୍ୟାର ଅପେକ୍ଷା
ନମସ୍କାର କାଲି ପୁଣି
ରିକ୍ସା ଭଡ଼ା କମ୍ ହେବ ନାହିଁ,
ଆଜି ଏହି ସନ୍ଧ୍ୟାବେଳେ ପତ୍ରସବୁ ଝଡ଼ି ଝଡ଼ି ପଡ଼େ ପତ୍ରଝଡ଼ା ଥମିଯିବ ନାହିଁ ।

ଏ ମୋର ମନର ତଳେ ଏ ସହର ଯଦି କେବେ ଥମିଯାଏ ରହିଯାଏ
ଅକସ୍ମାତ୍ ସ୍ଥିର ହୋଇ ସ୍ତମ୍ଭୀଭୂତ ହୋଇ
ଏ ହାତ ଉପରେ ମୋର ଅକସ୍ମାତ୍ ଛିଡ଼ାହୁଏ ହଠାତ୍ ସମୟ
ଏ ହାତ ଉପରେ ମୋର ଟିକ୍ ଟିକ୍ ଶବ୍ଦଯାଏ ହଠାତ୍ ଉଭେଇ,
ମୁଁ କହିବି ଶୁଣୁଚ ହୋ ଗୋଟେ କଥା ପଚାରିବି ଆଜି
ଜାଣିଚଟି କୁମ୍ଭୀପାକ ନରକରେ ଅସତୀର ଦଶା
ଚାଣିଚଟି ପରିଣାମ ରତ ହେଲେ ପରପୁରୁଷରେ
ଦାଢ଼ି ମୋର କଣ୍ଟାଳିଆ ଯଦିଚ ତା ଫୋଡ଼ି ହୋଇଯାଏ,
ଶିମିଳି ଗଛର କଣ୍ଟା ବେଶୀ କିନ୍ତୁ କାଟିବ ଗାଲକୁ ଛିନ୍ନ ଭିନ୍ନ ନାଭି କମଳକୁ ।
କାଠଯୋଡ଼ୀ ବନ୍ଧ ଭାଙ୍ଗି ତଡ଼ିଦେବ କଟକ ସହର
ମୁଁ ଚାଲିବି ସୁଅ କାଟି—ଛାତି ତାର ଥିବ ଗୋଲ ହୋଇ
ଦେହର ବିକୃତି ମୋର ମନର ବିକାର ।
ଆଜି ସନ୍ଧ୍ୟା ଛାତି ତଳେ ଗୋଟି ଗୋଟି ପତ୍ର ଝଡ଼ିପଡ଼େ

ମୁହୂର୍ତ୍ତ ମୁହୂର୍ତ୍ତ ଯାଏ ଚାପିହୋଇ ଏ ସନ୍ଧ୍ୟାର ମୁଠା ଭିତରକୁ
ପଶ୍ଚିମରେ ତେଣୁ ଗାଢ଼ସବୁ
ଘନୀଭୂତ,
ଝରକା ପାଖରେ ମୋର ସରିନାହିଁ ତଥାପି ଅପେକ୍ଷା
ସାଢ଼େ ଦଶ ରାତି ହୋଇନାହିଁ
ସେ ଫେରି ଆସିବ ଧୀରେ ତା ଯୋତାର ଶବ୍ଦ ପାହାଚରେ
ତା କାନର ଦୁଲ ପରେ ଝିକିମିକି ରାସ୍ତାର ଆଲୁଅ
ତା ଓଠର ଆଢୁଆଳେ ଝିକିମିକି ଶହ ଶହ ତାରା
ଆଉ ତାର ନମସ୍କାର ଆସିବ କାଲିକି,
ମୁଁ ଚାହିଁବି ତା ଓଠକୁ, ବ୍ଲାଉଜ ତଳକୁ
ଖୋଜିବାକୁ, ବୁଝିବାକୁ ଗୁପ୍ତ ସେଠି ଯେତେ ଇତିହାସ
ଘଣ୍ଟାକ ଆଗରୁ,
କାଠଯୋଡ଼ୀ ଢେଉ ଢେଇଁ ଆସିନାହିଁ କଟକ ସହର
ମନର ବିକୃତି ମୋର ଏହି ଦେହ ମନର ବିକାର
ଏ ଆଖି ଆଗରେ ମୋର ଗୋଲ ତାର ଛାତିର ସମ୍ଭାର ।
ମୁଁ ଦେଖିଛି ସନ୍ଧ୍ୟା କେତେ ମ୍ଳାନ ହୋଇ ଯାଇଛି ମିଳାଇ
ପତ୍ର କେତେ ଝଡ଼ି ଝଡ଼ି ସମୟକୁ ଯାଇଛି ଗୋଡ଼ାଇ
ଆରସିରେ ମୁହଁ ଦେଖି ମୁଁ ମାପିଛି କେତେ ଗାଢ଼ ହୋଇ
ଆଖି ମୋର ଛୁଇଁଛି କୋରଡ଼
ମୁଁ ଦେଖିଛି ତୋଫାନ ଓ ଝଡ଼
କାଠଯୋଡ଼ୀ ଛାତି ଖୋଳି କେତେ ବାଲି ଦେଇଛି ଉଡ଼ାଇ
ତା'ପରେ ସମାନ ସବୁ ସମତୁଲ ନିଶ୍ଚିହ୍ନ ନିରୋଳ
ସବୁ ଭୁଲ ସବୁ ଠିକ୍ ମୂର୍ଚ୍ଛାହୋଇ ପଡ଼ିଅଛି ଶୋଇ,
ମୁଁ ତାକୁ ପଚାରି ନାହିଁ କରି ନାହିଁ କେବେ ମୁଁ ସାହସ
ମୁଁ ଗଣିଛି ଗୋଟି ଗୋଟି ପତ୍ରଝଡ଼ା· ମିନିଟ୍ ହାତରେ
ଛୁଇଁଛି ମୁଁ ଗୋଲ ଛାତି ତା'ର
ବୁଝିଛି ମୁଁ ଭ୍ରମରର ଲୋଭ
ତଥାପି, ତଥାପି କିଛି ଆଜିଯାଏ ହୋଇନି ସମ୍ଭବ ।

## ଫିଲିମ୍ ସରି ନାହିଁ

ରିକ୍‌ସାଭଡା କମି ନାହିଁ,  ଏ ହାତ ଉପରେ ମୋର ମିନିଟ୍
କଣ୍ଟା ଥମିଯାଇ ନାହିଁ
ମୁଁ ଚାହିଁଛି ଝରକାରେ ପତ୍ରସବୁ ଝଡ଼ି ଝଡ଼ି ଯାଏ
ପତ୍ରଝଡ଼ା ଥମିଯାଇ ନାହିଁ ।
ଏ ଗଳିରେ ଜହ୍ନ ଆସେ, ଝରକା ସେପାଖେ ଶୁଭେ ଚଇତର ଗୋପନ ନୂପୁର
ଧୂଳିର ଭଉଁରୀ ଖେଳି କେତେ ଫୁଲ ଲୋଟେ ମହକରେ
କେତେ ବେଣୀ ଫିଟିଯାଏ କେତେ ତାରା ଝଡ଼େ କୁହୁକରେ
ମୁଁ ଶୁଣେ ପତର ଛାତି ଛନକାଇ ଚହଲାଇ ନିଭିଯାଏ ହଜିଯାଏ କୂଳ
ଚଇତର ବିମନା ନୂପୁର;
ମୋ ପାଇଁ ଚଇତ କେବେ ଯାଇନାହିଁ ପତର ଥରାଇ
ମୋ ପାଇଁ ଗଳିର ମୋଡ଼ କେବେହେଲେ ଚେଇଁ ଉଠି ନାହିଁ
ଯେତେ ଯୁକ୍ତି ତର୍କ ଯେତେ ସବୁ ବାଦ ପ୍ରତିବାଦ ପରେ
ମୋ ପାଇଁ ଯାଇଚି ରହି ଯୁକ୍ତ ଆଉ ବିଯୁକ୍ତ ମୀମାଂସା
ଏକମାତ୍ର ସମାଧାନ ମୋର,
ମୁଁ ଏଠି ଚମକି ଦେଖେ ପତ୍ର ଝଡ଼େ ଥୁଣ୍ଟାଗଛ ଛିଡ଼ାହୋଇ ରହେ
ଢେଉ ପରେ ଢେଉ ଗିଳି ସମୟର ଆଖିଠାର ମାରି
ତା ଓଠର ଫାଙ୍କ ପରି ପଡ଼ିରହେ ଏହି ଗଳି ମୋଡ଼ ।



# ପ୍ରିୟବାନ୍ଧବୀ

ପଉଷ କୁହୁଡ଼ି ଆସେ ସ୍ୱପ୍ନ ପରି ଘାରି ଧାନକ୍ଷେତ
ବିଜନ ବାଲିର ଚରେ ଜହ୍ନ ଯେବେ କ୍ଳାନ୍ତ ହୋଇ ନଏଁ
ଗହନ ରାତିର ଆୟୁ କ୍ରମେ କ୍ରମେ କ୍ଷୟ ହୋଇ ଆସେ
ଯେତେବେଳେ ନଈପଠା ଶେଷଥର କର ଲେଉଟାଏ ।
ସେତେବେଳେ କେତେଥର ତୁମର ମୁଁ ପାଇଛି ବା ଦେଖା
ବିଷର୍ଣ୍ଣ ନଈର ତୁଠେ ଭାରି ବେଣୀ ଫିଟିଗଲା ବେଳେ
ତୁମର ଅସ୍ପଷ୍ଟ ଛାଇ ତୁଠେ ତୁଠେ ଛପିଗଲା ବେଳେ
ସେତେବେଳେ ତୁମର ମୁଁ ଦେଖିଛି ବା ସନ୍ଦେହର ଦେଖା ।
ସେ ହେଲା ପୁରୁଣା କଥା ଯେତେବେଳେ ଅଳ୍ପ ଥିଲା ଦିନ
ଆଉ ଥିଲା ଆକାଶରେ ରକ୍ତସ୍ରାବ ପଉଷ ସନ୍ଧ୍ୟାର
ତୁମେ ପୁଣି ଯାଇଥିଲ ବାଲିଚର ପାରିହୋଇ ନିଭି
ଆଜି ପରି ଅସଂଯତ ଅସମ୍ବୃତ ଭ୍ରାନ୍ତ ସନ୍ଦିହାନ ।
ଧାନକ୍ଷେତ ନଇଁପଡ଼େ ଶୀତ ଋତୁ ବୁଢ଼ାହୋଇ ଆସେ
ନିଛାଟିଆ ଆକାଶରେ ତାରା ନାହିଁ ପକ୍ଷୀର କାକଳି
ତୁମେ ଆଉ ଆସିନାହଁ ଏ ବାଟରେ ଥରେ ହେଲେ ଭୁଲି
ନିଶବଦ ବାଲିଚରେ ଯେବେ ଯାଏ ପବନ ଗୁମରି ।
ତୁମେ ଆଜି ଥରେ ଆସ ଯଦିଚ ବା ସବୁ ମୂର୍ଚ୍ଛାହତ
ଏହି ଗଛ ବଣଲଟା ଆଉ ଢେଉ ଆଉ ବାଲିଚର
ଆକାଶରେ ଜହ୍ନ ଯଦି କ୍ଳାନ୍ତ ପୁଣି ଆବଶ୍ୟକହୀନ
ମୁଁ ତୁମର ଅପେକ୍ଷାରେ ପ୍ରଶ୍ନମୟ ପୁଣି ସନ୍ଦିହାନ ।
ତୁମେ ଯଦି ମିଛକଥା, ତୁମେ ଯଦି ବହି ଦୋକାନରେ
ଆଧୁନିକ ପ୍ରେମ ଗଳ୍ପ, ତୁମେ ଯଦି ରେଡ଼ିଓ ଖବର
ତୁମେ ଯଦି ଫିଲ୍ମ ଗୀତ ଥାର୍ଡ଼କ୍ଲାସ୍ ରେଳ ଟିକେଟ ଘର
ତୁମେ ଯଦି ବଜାରରେ ଲୁଗା ଚିନି ଚୋରା କାରବାର....

ମୁଁ ପଢ଼େ ଖବର ସବୁ, ବୁଢ଼ା ହୋଇଯାଏ ଶୀତ ଋତୁ
ରଙ୍ଗସବୁ ଛାଡ଼ିଲାଣି କେବେଠାରୁ ଛିଣ୍ଡାଲୁଗା ଭଙ୍ଗା କୋଠାଘର
ଧାନକ୍ଷେତ କାହିଁ କେଉଁ ସ୍ମୃତିଟିକେ କେଉଁ ଅତୀତର
ଏଠି ମୋର ଚାରିପାଖେ ବାଲିଚର ଖାଲି ବାଲିଚର ।
ବାଲିରେ ମୁଁ ବୁଲିଯାଏ ସନ୍ଧ୍ୟାବେଳେ ଆଜିକାଲି ବିବର୍ଣ୍ଣ ସନ୍ଧ୍ୟାରେ
ଏହି ବାଲି ଚରେ ଚରେ ମୁଁ ଦେଖେ ବହୁତ ଲୋକ
ନାଲିନେଳି ବହୁତ ରଙ୍ଗର
ନିଛାଟିଆ କେତେବେଳେ ଦୀର୍ଘଶ୍ୱାସ ଜମିଆସେ ଆଉ ରାତି ଚାପି
ହୋଇଆସେ
ଏ ବାଲିରେ ସବୁ ଛାତି ଦୁହିଁ ହୋଇ ହୁଏ ଏକାକାର ।
ତୁମେ ଆସ ଆଜି ଆସ ମିଲଲୁଗା ପାଲଟି ଦେହରୁ
ବନାରସି ସିଲ୍‌କ ପିନ୍ଧି ସେ ଦେହରେ ହଳଦୀ ଲଗାଇ
ଚମ୍ପାଫୁଲ ବେଣୀ ମୂଳେ, ଚିତ୍ର ଲେଖି ଛାତି ଯୋଡ଼ିକରେ
ତୁମେ ଆସ ଆଜି ଆସ ମାଟିରୁ ବା ଆକାଶ ଉପରୁ ।
ଯେତେ ବାଲି କୁଢ଼ ହୁଏ ଯେତେ ଦେହ ଜଳିପୋଡ଼ି ଯାଏ
ତୁମେ ଆସ ତା' ଭିତରୁ ଯେତେ ଯାହା ଅଭଦ୍ର ଅଶ୍ଳୀଳ
ତୁମରି ଓଠରୁ ତଳେ ଟୋପା ଟୋପା ଝରାଇ ଝରାଇ
ତୁମେ ଆସ ସତୀତ୍ୱ ବା ପୁଞ୍ଜୀଭୂତ ଯେତେ ବ୍ୟଭିଚାର ।
ରାତି ଧୀରେ ଗାଢ଼ହୁଏ ଦୂରର ଏ ଝାଉଁବଣ ଆଡ଼େ
ଚେର ସବୁ ଶୋଷିନିଏ ପ୍ରାଣପଣେ ଏ ବାଲିର ଛାତିତଳୁ ଦାବି
ଏ ନିଶବ୍ଦ ବାଲିଚରେ ଜହ୍ନ ନାହିଁ ତାରା ନାହିଁ ଯେବେ
ମୁଁ ଆଣୁଛି ତୁମପାଖେ ମାଟିର ମୋ ଜନ୍ମାନ୍ତର ଦାବି ।

ତୁମେ ଆଜି ଏଠି ଅବା ବାରାଣସୀ କାଶୀ ନଗରରେ
କଳରେ ତୁମର ପାନ, କିମ୍ବା ଗୋଲ ନିଛାଟିଆ ଆରିସି ସାମ୍ନାରେ
ମୁହଁରେ ତୁମର ସ୍ନୋ, କିମ୍ବା ଯେତେ ଚେତନାର ସୀମା ପାରିହୋଇ
ନିଦରେ ପଡ଼ିଚ ଶୋଇ ତନ୍ଦ୍ରାହତ କେଉଁ ଅସ୍ତ ବନସ୍ତ ଭିତରେ ।

ମୁଁ ତୁମକୁ ପାରେ ଦେଖି ଆଜିଠାରୁ କେତେ ବର୍ଷ ପରେ

ଅପନ୍ତରା ସମୟର ଛାତିତଳେ କୁଢ଼ କୁଢ଼ ଉଚ୍ଛିଷ୍ଟ ଉପରେ
ହାଡ଼ରୁ ତୁମର ପଡ଼େ ମାଂସ ଖସି, ଖୋଳି ହୋଇ ଆଖି ହୁଏ ଗାଡ଼
ତା ଭିତରେ ଲୟପାଏ ପ୍ରାଣ ମୋର ଆତ୍ମା ମୋର ଆଉ ମୋର
ମାଟିର ଆକାର ।
ଗହୀର ଉପରେ ଯାଏ ଛାଇ ଡେଇଁ କିଆ ବଣ ବେତଲଟା ମୂଳେ
ଛାଇ ଯାଏ ଛପି ଛପି କାଠଯୋଡ଼ୀ ବାଲିଚର, କିମ୍ବା ପୁରୀ
ସମୁଦ୍ର କୂଳରେ
ରାତି ଯାଏ ଝରି ଝରି ଆମର ଏ ଦୋକାନ ବଜାରେ
ସ୍ୱପ୍ନଯାଏ ଉଙ୍କିମାରି ଗଳି ଗଳି କୋଠା ସନ୍ଧି ତଳେ ।
ମୁଁ ତୁମକୁ ଭଲପାଏ ଚନ୍ଦ୍ରଭାନୁ ଭଲ ପାଇଥିଲା
ସିଂହଳ ଦ୍ୱୀପର ସ୍ୱପ୍ନ ମୁଁ ଯାଇଛି କିଣିବାକୁ ଯେବେ
ଲବଙ୍ଗ ବଣର କଥା, କିମ୍ବା ବ୍ୟଥା କଦମ୍ବ କଢ଼ର
ମୋ ଆଖିରେ ଅବାସ୍ତବ ପାଲଟିଚି ଏ ସହର ତେବେ ।
ଲାବଣ୍ୟବତୀରୁ ତୁମେ ଆସ ଅବା ରସକଲ୍ଲୋଳରୁ
କୋଣାର୍କ କାନ୍ଥରୁ ଅବା ସିନେମାର ପରଦା ଭିତରୁ
ମୁଁ ତୁମକୁ ଭଲପାଏ ଚନ୍ଦ୍ରଭାନୁ ଭଲ ପାଇଥିଲା
ମୋ ପାଖେ ସିଂହଳ ଦ୍ୱୀପ ଯାତ୍ରା କିନ୍ତୁ ଅସମ୍ଭବ ହୁଏ ।
ତୁମେ ଯେବେ ଆସ ଆଜି ନିଛାଟିଆ ଏ ଯେ ଜନହୀନ
ବାଲିଚର ଖୋଳି ଖୋଳି ଚେର ଯେତେ ପଶେ ଭିତରକୁ
ଆଜି ରାତି କୋହ ହୋଇ ମିଶିଯାଏ ବିରାଟ ଶୂନ୍ୟରେ
ତୁମେ ଯେବେ ଆସ ଆଜି ବାସ୍ତବ ବା ସ୍ୱପ୍ନ ଆକାରରେ ।
ମୁଁ ତୁମକୁ ଭଲପାଏ ତୁମେ ଦେବ ଚିଠିର ଜବାବ
ତୁମେ ପୁଣି ଫେରିବ ବା ଏହି ରେଳ ଲାଇନ୍ ବାଟରେ
ତୁମେ ପୁଣି ଦେଖାଦେବ ନିଛାଟିଆ ବାଲି ଚରେ ଚରେ
କେଉଁ ଅସ୍ତ ଜହ୍ନତଳେ ଅବା କେଉଁ ବିବର୍ଣ୍ଣ ସନ୍ଧ୍ୟାରେ ।
ତୁମରି ଦାନ୍ତରେ ମୋର ଓଠ ଯିବ ଛିନ୍ନ ଭିନ୍ନ ହୋଇ
ତୁମର ଛାତିରେ ଯିବ ଦଳିହୋଇ ବାଲିଚର ନିଶୂନ ନିଘଞ୍ଚ
ତୁମର ଦେହର ରକ୍ତ ପାଣି ଫାଟି ଥଣ୍ଡା ହୋଇଯିବ
ତୁମର ଭିତରେ ମୋର ଆତ୍ମା ଯିବ ନିଶ୍ଚିହ୍ନ ମିଳାଇ ।

ମୁଁ ତୁମକୁ ଭଲପାଏ ପ୍ରାଣପାତ କରି ମୋର ଦେହ ମୋର ବିସର୍ଜନ କରି
ଆଜି ରାତି ଅଣ୍ଡାହୁଏ ଯାକି ହୋଇ ଆସେ ଦିଗ୍‌ବଳୟ
ଭିତିହୀନ ତୁମେ ମୋର, ଆଉ ମୋର ଜୀର୍ଣ୍ଣ ସତ୍ତା ପୋତି
ଅନୁର୍ବର ଯୁକ୍ତିହୀନ ମାଡ଼ିବସେ ଦୁର୍ନିବାର ସମୟ ସମୟ ।



# ଶରତ ଋତୁର ଜହ୍ନ

ଶରତ ଋତୁର ଜହ୍ନ ଯାଏ ଆଜି ଆସ୍ତେ ଯାଏ
ଡେଇଁ ଡେଇଁ ଛୋଟ ଛୋଟ ବଉଦର ସିଡ଼ି
ଏତେବେଳେ ଚକ୍ରବାକ ବୋଧହୁଏ କାନ୍ଦୁଥିବ
ଏତେବେଳେ ବିଛଣାରେ ନିଦ ଭାଙ୍ଗି ଆସୁଥିବ ଲାବଣ୍ୟବତୀର..
ଏତେବେଳେ ଆକାଶରେ ନେଁଶି ହୋଇଯାଏ ଝାଉଁବଣ
ଏତେବେଳେ ଲୁଣଖିଆ ଇଟାକାଠ ସିମେଣ୍ଟ ଲୁହାରେ
ଏଠି ମୋର ଚାରିପାଖେ କ୍ଷୟପାଏ କ୍ଷୟପାଏ
ନିର୍ବିବାଦେ ରାତିର ଜୀବନ ।
ଚକ୍ରବାକ କାନ୍ଦେ ବୋଲି ସମୁଦ୍ରରେ ଜହ୍ନରାତି ହେଲେ
କେତେଥର ଦେଖିଚି ମୁଁ କାଶଫୁଲ ଭାଙ୍ଗେ ଆସି ଢେଉ
ଏ ବାଲିରେ ବୁଲି ବୁଲି ମୁଠା ମୁଠା ଶାମୁକା ଗୋଟାଇ
କେତେଥର ଖୋଜିଚି ମୁଁ ଜହ୍ନରାତି ଦିନ ଥାଉଁ ଥାଉଁ ।

ଶରତ ଋତୁର ଜହ୍ନ ଯାଏ ଆଜି ଆସ୍ତେ ଯାଏ, ଚକ୍ରବାକ
ବୋଧେ କାନ୍ଦୁଥିବ;
ମୁଁ ତା'ର ରେଖାର ସ୍ୱପ୍ନ ଆଜି ପୁଣି ଚେଷ୍ଟା କରେ
ଏ ଜହ୍ନର ଫିକା ଶ୍ୟାହି ଗୋଳି ଗୋଳି ଆଙ୍କି ରଖିବାକୁ ।

ଶିଥିଳ ଅନ୍ଧାର ତଳେ ପବନ ଉଡ଼ାଇ ଯାଏ ଶୀର୍ଣ୍ଣ ଛିନ୍ନ ପତ୍ର ସବୁ
ଧୂଳିମଳି ଖବର କାଗଜ,
ଅତର୍କିତ ତା ଶବ୍ଦରେ ମୁଁ ଚାହିଁଚି କେତେଥର
ବୁଲିପଡ଼ି ତା'ର ବ୍ୟସ୍ତ ଉତ୍ୟକ୍ତ ଓଠରୁ
ଜନରବ ସ୍ୱାମୀ ଅବା

ମୋର ମାଂସ ହାଡ଼ ତଳେ ସମୟ ବା ପ୍ରେମର ଦରଜ ।
ଶରତ ଋତୁର ଜହ୍ନ ଆଜି ଯଦି କଥା କୁହେ, ପୁଣି ମୋର ସାଇକେଲ ଚଢ଼ି
ବ୍ରେକ୍ ଦେଇ ଧୀରେ ଧୀରେ କୋଠାଘର ଛାଇରେ ଛାଇରେ
ମୁଁ ଯିବି ନ ଦେଇ ବେଲ୍ ରାସ୍ତା ଛାଡ଼ି ଗଳିରେ ଗଳିରେ...
ହୁଏତ ଓଠରେ ତା'ର ଏ ଜହ୍ନର ସ୍ୱାଦୁ ଥିବ
ଚାପି ହୋଇ ରହିଥିବ ଚୁପ ହୋଇ ବିରହର ଗୀତ
ମୁଁ କହିବି ତା କାନରେ ଏ ଜହ୍ନ ରାତିରେ ଆସ
ତୁମେ ମୁଁ ଆମେ ଦୁହେଁ - ଆକାଶ ଓ ମ୍ଳାନ ନଈବାଲି,
ତୁମେ ଆଉ ମୁଁ ଦୁହେଁ, ଭଞ୍ଜ ଆଉ ମାନସିଂହ ରାଧାନାଥ ପଢ଼ି
ନିଶ୍ଚିହ୍ନ ମିଳାଇ ଯିବା ସ୍ୱାମୀ ଆଉ ଜନରବ ଛାଡ଼ି ।

ଚକ୍ରବାକ କାନ୍ଦି କାନ୍ଦି ମରିଯାଏ ଆକାଶର ତଳେ
ସମୁଦ୍ରର ଢେଉ
ଧାଡ଼ି ଧାଡ଼ି କାଶଫୁଲ ଠେଲି ଆଣି ଫିଙ୍ଗିଦିଏ ଇତସ୍ତତ
ସମୁଦ୍ର ବାଲିରେ
ତା ଓଠ ଭିତରୁ ଦାନ୍ତ ଧାଡ଼ି ଧାଡ଼ି ଦେଖାଯାଏ
ଶରତ ଋତୁର ଜହ୍ନ ଯାଏ ଯେବେ ମରିଯାଏ ଏ ରାତିରେ ଅମୁହାଁ ଗଳିରେ ।

ସମୁଦ୍ର ବାଲିରେ ଜହ୍ନ ଆଜି ହୁଏ ଇତସ୍ତତ
ଆକାଶରେ ମେଘ ଆଉ ମେଘ
ଜହ୍ନ ଯାଏ ତା ଭିତରେ ମରି ହଜି ନିର୍ବିବାଦେ
ସମୁଦ୍ର ବାଲିରେ ସ୍ୱପ୍ନ କାହାର ବା ଚେତନା କାହାର ?
ତୁମେ ଆଜି ଶୋଇପଡ଼ ଜହ୍ନରାତି ଆସ୍ତେ କ୍ଷୟ ପାଉ
ଜାକିଜୁକି ହାତ ଗୋଡ଼, ମୁହଁ ପୋତି ତକିଆ ଭିତରେ
ତୁମର ଉଦ୍‌ଭ୍ରାନ୍ତ ମନ ସ୍ଥିର ହୋଇ ଛପିଯାଉ, ଚୁପ୍‌ଚାପ୍
ଆପେ ଛପିଯାଉ ।
ଏ ଜହ୍ନରେ ବ୍ୟଥା ନାହିଁ ଗୋପ୍ୟ କଥା ନାହିଁ ପୃଥିବୀର
ଏ ବାଲିରେ ସୁପ୍ତି ଲଭୁ ଯେତେ ଚେଷ୍ଟା ଯେତେ ମନସ୍ତାପ
ଆଜି ଯେବେ କାଶଫୁଲ ଠେଲି ଆଣି ଫିଙ୍ଗିଦିଏ ଢେଉ

ସ୍ୱପ୍ନାତୁର ପଥଭ୍ରାନ୍ତ ତୁମର ଏ ଉତ୍ତେଜିତ ମନ
ଏ ନିଶବ୍‌ଦ ବାଲିଚରେ ଯୋଡ଼ି ଯୋଡ଼ି ଚିଠିର କାଗଜ
ଭଙ୍ଗାତୁଟା ସ୍ମୃତି ଯୋଖି ଆଜି ଖୋଜେ ଅର୍ଥ କାର
କେଉଁ ସୁପ୍ତ ପୃଥିବୀ ବା କେଉଁ ଗୁପ୍ତ ଆକାଶ ସନ୍ଧାନ ।



# ସୁନାର ଝରଣା

ହସି ହସି ଝରିଗଲା ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା;
ସେତେବେଳେ ଏ ଗଳିରେ ଖରା ଥିଲା ପୁଣି ଥିଲେ ଲୋକେ
ପୁଣି ଥିଲା ମୋ ଦେହରେ ପଉଷର ପଳିତ ମୂର୍ଚ୍ଛନା ।

ପଉଷର କୁହୁଡ଼ିରେ ତାରା ହଜେ ଜହ୍ନ ହଜିଯାଏ
ଝଡାପତ୍ର ଠେଲି ଠେଲି ଧୂଳି ଯାଏ ସମୟ ବି ଯାଏ
ଜୀବନରୁ ବର୍ଷଟିଏ ଖସିଯାଏ ଆସ୍ତେ ଖସିଯାଏ ।

ନିଦରେ ମୁଁ ଶୋଇଥିଲି କ୍ଳାନ୍ତ ଦେହ କ୍ଳାନ୍ତ ଥିଲା ମନ
ଆଖିରେ ମୋ ସୁପ୍ତି ଥିଲା କମିଜର ରଫୁରେ ରଫୁରେ
ଏ ଦେହରେ ସ୍ୱପ୍ନ ଥିଲା, ଥିଲା ମୋର ଜୀବନର ଗାନ ।

ଏତେବେଳେ ଅକସ୍ମାତ ଜହ୍ନ ଯଦି ଉଠେ
ଏତେବେଳେ କୁହୁଡ଼ିରେ ଝରିପଡ଼େ ଥୋପି ଥୋପି ତାରା
ଏତେବେଳେ ହଠାତ୍ ମୁଁ ଜାଣିପାରେ ଯଦି
ଦେହରେ ମୋ ଛୁଇଁଗଲା ଛପି ଛପି ଗୋପନ ଦକ୍ଷିଣା ।

ପଉଷର କୁହୁଡ଼ିରେ ଜହ୍ନ ହଜେ ତାରା ହଜିଯାଏ
ହସି ହସି ଝରିଯାଏ ସିମେଣ୍ଟର ଚଟାଣ ଉପରେ
ସୁନାର ଝରଣା,
ତା' ଆଖିର ଡୋଳା ତଳେ ଡେଇଁ ଉଠେ ମୋ ମୁହଁର ଛାଇ

ମୁଁ ଚାହିଁଚି ତା' ଆଖିକୁ ଅପଲକ ପୁଣି ଭାଷାହୀନ

ତା' ଓଠରେ ଯେତେ ଫୁଲ ଦଳିହୋଇ ରଙ୍ଗ ଗୋଳିଦିଏ
ମୁଁ ଭାବିଚି ଖୋଜିଯିବି ସେଠି ମୋର ପ୍ରାଣର ସନ୍ଧାନ ।

ତା ପାଦରେ ଛନ୍ଦ ଅଛି, ତା' ଆଖିରେ ଝିକିମିକି ତାରା
ତା ଦେହରେ ଯେତେ ଢେଉ ଜହ୍ନ ଆଉ ତାରା ଆଲୁଅର
ତା' ବେଣୀରେ ଲୀଳାୟିତ ସ୍ୱପ୍ନ ଯେତେ ଉଆଁସ ରାତିର
ତା ଭିତରେ ଆଶା ମୋର ରହେ ଅବା ଗୋପ୍ୟ ନିରାକାର ।

ଝରଣାର ବେଣୀ ଝୁଲେ ଝରଣାର ଶାଢ଼ୀ ଢେଉ ଖେଳେ
ପଉଷର କୁହୁଡ଼ିରେ ଆଖିରେ ମୋ ଜ୍ୟୋତି ଯେବେ ନିଭେ
ଝରଣାର କୂଳେ କୂଳେ ଆୟୁ ହତ ମୁଁ ଏକ ପଥିକ
ପାଣି ଖୋଜେ ସ୍ୱପ୍ନ ଖୋଜେ, ଖୋଜେ ମୋର ଦୀପର ଆଲୋକ ।

ସୁନାର ଝରଣା ଯାଏ ଝରି ଝରି ସିମେଣ୍ଟର ଚଟାଣ ଉପରେ
ପଉଷର କୁହୁଡ଼ିରେ ଝରେ ଝରେ ଦୁର୍ନିବାର
ଆୟୁ ମୋର ପତ୍ର ଝଡ଼ିପଡ଼େ
ମୁଁ ତାକୁ ପାଇଚି ଭଲ ବ୍ୟର୍ଥତା ମୋ ପୁଞ୍ଜିଭୂତ କରି
ଜୀର୍ଣ୍ଣ ମୋର ଅବଶେଷ ଜାଳି ପୋଡ଼ି ପଉଷର ମ୍ଲାନ ଗୋଧୂଳିରେ ।



# ଅଳକା ସାନ୍ୟାଲ

ତୁମକୁ ବା ସଚ୍ଚିବାବୁ ଦେଖିଥିଲେ କେବେ
ଜାଣେ ନାହିଁ ଅଳକା ସାନ୍ନ୍ୟାଲ
ସେତେବେଳେ ଆକାଶରେ ସ୍ୱର୍ଣ୍ଣ ଚିତା ବାଘ ଅବା ହରିଣର ଛାଲ
ଅବା ଥିଲା ଗୋଲ ହୋଇ ହଳଦିଆ ଜହ୍ନର ମଶାଲ ।

ମୁଁ ତମକୁ ଦେଖେ ଆଜି ତୁମେ ଦିଅ ବ୍ଲାଉଜର ବୋତାମ
ତା ଦାଗ ତୁମେ ଧୁଅ ସେମିଜରୁ ଗରମ ପାଣିରେ
ତୁମେ ପୁଣି କଥା କୁହ ମୁହଁ ପୋତି ଟେବୁଲ ସେପାଖେ
ତୁମେ ପୁଣି ଉଠି ଆସି ଆସ୍ତେ ବସ ପାଖ ଚଉକିରେ ।

ଦିପହର ଧୂଳି ଉଡେ 'ଖାକି ଆଉ ଫିଲ୍‌ଡ ଗ୍ରେ ଧୂଳି'
ସିଗାରେଟ୍ ଧୂଆଁ ପୁଣି ଭାରି ହୋଇ ବସିଯାଏ ଜରିଫୁଲ କାଗଜ ଫୁଲରେ
କାଉ ଆଉ ବାଦୁଡ଼ିର ଚେଁ ଚାଁ ମିଶିଯାଏ ଏକାଠି ବାହାରେ
କୋଇଲାର ଧୂଆଁ ପୁଣି ନିଶ ମୋଡ଼ି ମୋଡି ଉଠେ ରିକ୍‌ସାବାଲା ବାଟ ଯାଏ ଭୁଲି ।

ତମକୁ ମୁଁ ଦେଖିପାରେ ଯୋତା ଷ୍ଟ୍ରାପ୍ ତୁମେ ଧୀରେ ଖୋଲ
ତୁମେ ଆସି ଲୋଟିପଡ଼ ବିଛଣାରେ ବେଣୀ ଆଉ ଶାଢ଼ୀ ଅସଂଯତ
ତୁମେ ପୁଣି ଆସ୍ତେ ଉଠ ଲୁଗାପଟା ଠିକ୍‌ଠାକ୍ କରି
ଟାଉନ୍‌ହଲ୍ ସଭାରେ ମୁଁ ପାଏ ପୁଣି ତୁମର ସାକ୍ଷାତ ।

ତମକୁ ବା ସଚ୍ଚିବାବୁ କେବେ ଥରେ ଚିତ୍ରରଥ ଗନ୍ଧର୍ବ ହାତରୁ
ଛଡ଼ାଇ ଆଣିଲାବେଳେ ତୁମେ କଲ ଜୟ ଜୟକାର
ତା'ପରେ ବା ପୁଣି କେବେ ନୂଆଖାଲି ପଠାଣ ବସ୍ତିରୁ

ଭାରତର ସ୍ୱାଧୀନତା ଦେଲା ପୁଣି ଦ୍ୱିତୀୟ ନିସ୍ତାର ।

ଦିପହର କ୍ଳାନ୍ତ ହୁଏ ସନ୍ଧ୍ୟା ଆସେ ରେଳପୋଲ ଆଡୁ
କୋଇଲା ଚୁଲିର ଧୂଆଁ ଦେଖା ଆଉ ଯାଏ ନାହିଁ ଚୁପ୍‌ଚାପ୍ କାଉ ଓ ବାଦୁଡ଼ି
ସିଗାରେଟ୍ ଧୂଆଁ ହୁଏ ଆହୁରି ଜମାଟ ପୁଣି ନରଗିସ୍ ନେତାଜୀ ଫଟୋରେ
ଆକାଶରେ ଜହ୍ନ ପୁଣି ଦେଖାଦିଏ ଅକସ୍ମାତ ଗୋଲ ତାର ତଳ ଓଠ ରାଗରେ କାମୁଡ଼ି ।

ମୁଁ ତୁମର ଶୁଣେ ଆଜି ଝଡ଼ ପରି ଭୀଷଣ ବକ୍ତୃତା
ମୁଁ ଦେଖେ ତୁମର ଦେହ ହଠାତ୍ ଯାଏ କାଦୁଅ ପାଲଟି
ଛିଣ୍ଡା ଚିଠି କାଗଜରେ ତୁମର ଯା ଅବଶିଷ୍ଟ ରହେ
ପବନ ସେତକ ନିଏ ସଡ଼କରୁ ସାଉଁଟି ସାଉଁଟି ।

ଭଙ୍ଗା ନୂଆଖାଲିରେ ବା କଲିକତା ନୂଆଦିଲ୍ଲୀ ଆଡ଼େ
କାଉ ଆଉ ବାଦୁଡ଼ିର ଚେଁ ଚାଁ, ପୁଣି ଏତେ ଯିବା ଓ ଆସିବା
କଟକର ଗଳି ଗଳି ରାସ୍ତା ରାସ୍ତା ଛକରେ ଛକରେ
ରାତିର ପ୍ରସୂତି କଷ୍ଟ ସକାଳର ରୁଗ୍‌ଣ ଜନ୍ମ ନେବା ।

ତା' ଭିତରେ ତୁମେ ପୁଣି ପ୍ରେମ କର ଗର୍ଭବତୀ ହୁଅ
ସିନେମାର ହ୍ୟାଣ୍ଡବିଲ୍ ମୁଁ ଦେଖିଛି ତୁମର ଦେହରେ
ପବନ ତୁମକୁ ଯେବେ ଆସ୍ତେ ନିଏ ବାଲିରୁ ସାଉଁଟି
ମୁଁ ତୁମକୁ ସ୍ୱପ୍ନ ଦେଖେ ମୋର ଢ଼ିଲା ପାଇଜାମା କାମିଜର ଅମରାବତୀରେ ।



# ଚିଠି

ତୁମେ ମୋତେ ଭଲପାଅ... ଜାଣେ ଜାଣେ ଭାରି ଭଲପାଅ
ନିଛାଟିଆ ଜହ୍ନ ତଳେ ପତରର ବ୍ୟଥିତ ସ୍ୱପ୍ନରେ
ପୁଣି ଜୀର୍ଣ୍ଣ ଚଇତ୍ରର ଜରାଗ୍ରସ୍ତ ବିବର୍ଣ୍ଣ ଦେହରେ
ତୁମେ ମୋତେ ଭଲପାଅ ଜାଣେ ଜାଣେ ଭାରି ଭଲପାଅ ।

ଆଜି ତେଣୁ ଏ ରାତିରେ ନିଶବଦ ଏ ବାଲି ଉପରେ
ବାଟୋଇ ପକ୍ଷୀର ଗୀତ ଯାଏ ଯେବେ ଚୁପ୍‌ଚାପ୍ ହୋଇ
ଆଉ ଦୂର ଝାଉଁବଣ ଜାକିଜୁକି ସ୍ଥିର ହୁଏ ନିର୍ବାକ ନିଥର
ଅସ୍ତ ଜହ୍ନ ଆଲୁଅରେ ସ୍ୱପ୍ନ ଯାଏ ଛାରଖାର ହୋଇ
ମୁଁ ତୁମକୁ ଚିଠି ଲେଖେ ମୋର ଏହି ନିଛାଟିଆ ଘର
ତୁମର ହାତର ଚିହ୍ନ ବିଛଣାରେ ଟେବୁଲରେ, ଟ୍ରଙ୍କ ବାକ୍‌ସ ସବୁ ଜିନିଷରେ,
ତୁମର ପାଦର ଚିହ୍ନ ପାହାଚ ଉପରେ ପୁଣି ଚାରିଆଡ଼େ ଚାରିପାଖେ
ତୁମର ଦେହର ଚିହ୍ନ ରୋଗଗ୍ରସ୍ତ ଏ ଦେହରେ କ୍ଳାନ୍ତ ମୋର ବିବର୍ଣ୍ଣ ଦେହରେ –

ଏ ରାତିର ଛାତି ତଳେ ଏ ଯେ ସ୍ଥିର ଜମାଟ ସ୍ତବ୍ଧତା
ଅସ୍ତତାରା ଆଲୁଅରେ ବାଲିରେ ବା ଦେଖାଯାଏ ପବନର ଇତସ୍ତତଃ ଦେହ
ଦୂର ଝାଉଁ ଜଙ୍ଗଲରେ ଥଣ୍ଡା ହୋଇ ଆସେ ଛାଇ
ସମୁଦ୍ରର ଢେଉରେ ବା ନିରର୍ଥକ ଚେଷ୍ଟା ଆଉ ନଷ୍ଟ ଯେତେ ଆୟୁଷର କୋହ ।

ମୁଁ ତୁମକୁ ଭଲପାଏ... ତୁମେ ଆଜି ଦୂରରେ ଦୂରରେ
ଏହି ଅସ୍ତ ଜହ୍ନ ଥିବ ତୁମର ଆକାଶ ଆଡ଼େ ହୁଏତ ବା ତୁମର ଆଖିରେ
ତାରାର ଆଲୁଅ ଥିବ ସ୍ୱପ୍ନ ହୋଇ ଏ କୁହୁଡ଼ି ଆଉ ଏହି ରାତିର ଅନ୍ଧାର
ତୁମେ ବା ଉଠିବ ଚେଇଁ ହଠାତ୍ ଦୁଃସ୍ୱପ୍ନ ଦେଖି ଅକଥିତ କେଉଁ ଆଶଙ୍କାରେ ।

ମୁଁ ତୁମକୁ ଚିଠି ଲେଖେ ତୁମେ ଦେବ ଚିଠିର ଉତ୍ତର
ତୁମେ ବା ଆସିବ ଫେରି ଅସ୍ତ ଜହ୍ନ ନିଭିବା ଆଗରୁ
ଏଠି ମୋର ଚାରିପାଖେ ଏ ଦେହର ଦୁର୍ଗନ୍ଧ ଓ ଦୁଃସ୍ୱପ୍ନରେ ଆଜି
ମୁଁ ତୁମକୁ ଦେଖିପାରେ ମୋର ଶତ ପ୍ରେତାତ୍ମା ଭିତରେ ।

ତୁମେ ଆସ ଆଜି ଆସ ତୁମେ ମତେ ଭାରି ଭଲପାଅ
ତୁମର ସ୍ମୃତିର ତଳେ ଅତୀତର ଅକଥିତ ଯେତେ ଭୀରୁ ସ୍ୱପ୍ନ ସେପାରିରୁ
ଯେତେ ଆସି ଫେରିଗଲେ ଶରତର ବାଟୋଇ ବଉଦ
ତୁମେ ମତେ ଚିହ୍ନିପାର ଗୀତ ଆଉ କବିତା ଭିତରୁ ।

ମୁଁ ତୁମର ସ୍ୱପ୍ନ ଜାଣେ, ମୁଁ ତୁମର ରାତିର କବିତା
ମୁଁ ତୁମର ଜହ୍ନ ପୁଣି କାଳିଦାସ ଅନୁବାଦ ପରି
ମୁଁ ତୁମର ବାପ ଭାଇ ସାନ ସାନ ପ୍ରେମିକରୁ ବଳି
ମୁଁ ତୁମର ସତୀତ୍ୱର ଧ୍ରୁବତାରା ସ୍ୱାମୀ ଓ ପ୍ରହରୀ ।

ତୁମେ ତେବେ ଆଜି ଆସ ମୁଁ ତୁମର କ୍ଳାନ୍ତ ଅପେକ୍ଷାରେ
ଛୋଟ ମୋର ଏ କୋଠରୀ ପୃଥିବୀର ଘୂର୍ଣ୍ଣାବର୍ତ୍ତ ତୁଲେ
ଆକାଶର ଅପନ୍ତରା ତେଇଁ ତେଇଁ ଆଜି ଯେବେ ଛୁଟେ
ଏ ଦୁରନ୍ତ ଗତି ବେଗ ବ୍ୟାଧିଗ୍ରସ୍ତ ମୋ ଦେହର ଜରାଗ୍ରସ୍ତ ମୋର ଲୋମ ମୂଳେ ।

ତୁମେ ଆସ ଆଜି ଆସ ନିଶବଦ ଯଦିବା ନୂପୁର
ବାଟୋଇ ପକ୍ଷୀର ଗୀତ ମରି ଅବା ଗଲାଣି ଯଦିଚ
ଆକାଶର ଜହ୍ନ ଯଦି ଅସ୍ତ ପୁଣି ମ୍ଳାନ ଯେତେ ତାରା
ଚମ୍ପାବତୀ ଗଳ୍ପ ଯଦି ମିଛ କଥା ଖାଲି ବାଜେ କଥା ।

ଏ ଦେହ ଉପରେ ମୋର କ୍ଷୟ ହୋଇଯାଏ ରାତି
ସମୟର ପାଦଶବ୍ଦ ତୁମେ ସେଠି ଶୁଣି ପାରୁଥିବ
ତୁମର ପାଚିରୀ ପରେ ପିଠି ରଖି ଏ ଥଣ୍ଡା କୁହୁଡ଼ି
ନିଛାଟିଆ ଯେତେବେଳେ ଆରାମରେ ଶୋଇ ପଡ଼ିଥିବ ।

## ଗୁରୁପ୍ରସାଦ କବିତା • ୩୪

ଏ ରାତିର ପବନରେ ଘୂର୍ଣ୍ଣାବର୍ତ୍ତ ଭିତରୁ ମୋ ତୁମର ସେ ଆକାଶ ଆଡ଼କୁ
ମୁଁ ଆଜି ପଠାଏ ମୋର ଏ ବିରହ ଭୟ ପୁଣି ସ୍ତୂପ ସ୍ତୂପ ନିରର୍ଥକ ବାଲି
ମୁଁ ପଠାଏ ତୁମ ପାଇଁ ମୋର ରୋଗ ଯନ୍ତ୍ରଣା ଓ ମୋ ଦେହର
ଝାଳ ଆଶା ତାତିର ଖବର
ମୁଁ ପଠାଏ ତୁମ ଆଡ଼େ ମୋର ଶତ ପ୍ରେତାତ୍ମାର ନଷ୍ଟ ଯେତେ ଆଶା ଆଉ
ମୋର ପିତୃପୁରୁଷର ଜରା ମୃତ୍ୟୁ ବ୍ୟାଧିର ଖବର ।

ମୁଁ ତୁମକୁ ଭଲପାଏ ତୁମେ ମତେ ଜାଣେ ଭଲ ପାଅ
ମୁଁ ତୁମର ଅପେକ୍ଷାରେ ପୁଞ୍ଜିଭୂତ କରି ମୋର ଏ ଦେହର ଯେତେ କାତରତା
ମୋ ଚିଠିର ଉତ୍ତର ବା ତୁମେ ଦେବ ହୁଏତ ନ ଦେବ
ହୁଏତ ଲେଖିବ ତୁମେ ମୋ ପାଇଁ ବା ବିରହ କବିତା ।

ମୁଁ ଆଜି ତୁମର ବାଟ ଚାହିଁବସେ ଏ ରାତିର ଆକାଶରେ ଅସ୍ତ ହୁଏ ତାରା
ମୁଁ ତୁମକୁ ଖୋଜେ ଆଜି କୁଡ଼ କୁଡ଼ ବାଲି ଆଉ ଏ ଘରର ଆସବାବ ଜିନିଷ ଭିତରେ
ବାଟୋଇ ପକ୍ଷୀର ଗୀତ ମରି ଅବା ଗଲାଣି ଯଦିଚ
ମୁଁ ତୁମର ଅପେକ୍ଷାରେ ମୁଁ ତୁମର ଭ୍ରାନ୍ତ ଅପେକ୍ଷାରେ ।

ତୁମେ ଆଜି ଫେରିଆସ ମୋ' ଦେହର ରୋଗ ଭିତରକୁ
ପିତୃଲୋକ ଆଜି ମୋର ଚାହିଁଥିବେ ଦୂର ଆକାଶରୁ
ତୁମେ ବା ଆସିବ ଫେରି ଏ ବାଲିର ଅପନ୍ତରା ଡେଇଁ
ଗତି ମୋର ଛିନ୍ନ ହେବ ଦୁରନ୍ତ ଓ ଦୁର୍ବିସହ ଏ ଘୂର୍ଣ୍ଣାବର୍ତ୍ତରୁ ।



# ଆଖିର କପୋତ ମୋର

ଆଖିର କପୋତ ମୋର ଆକାଶର ଇସ୍ପାତ ଦେହରେ
ବାଧାପାଇ ପ୍ରତିଦିନ ଫେରିଆସେ ଏହି ପୃଥିବୀକୁ
ଯେଉଁଠାରେ ତୁମେ କର ପ୍ରତିଦିନ ବିଜନ ପ୍ରତୀକ୍ଷା
ଜରା ମୃତ୍ୟୁ ବ୍ୟାଧି ପୁଣି ଜୀବନର ଅର୍ଥ ବୁଝିବାକୁ ।
ସମୁଦ୍ରର ଢେଉ ସବୁ ଛୋଟ ଛୋଟ ହାତ ପାପୁଲିରେ
ସ୍ଥବିର ବାଲିର ଦେହ ଯେବେ ଦିଏ ଆଉଁଷି ଆଉଁଷି
ମୁଁ ଯାଏ ବିବ୍ରତ ହୋଇ ଭେଦି ଖରା ଦିପହର ତପ୍ତ ଦୂସରତା
ମୋର ପିତୃ ପୁରୁଷର ସ୍ମୃତି ଖୋଜି ତୁମର ଏ ବିବର୍ଣ୍ଣ ଦେହରେ-
ତୁମେ କୁହ କଥା କୁହ ଘାସ ଆଉ ପତରର ଗୋପନୀୟ କଥା
ଘାଟି ବଣ ଜଙ୍ଗଲର କଥା ଯେତେ ଶିଉଳି ଶାମୁକା ଆଉ ସମୁଦ୍ରର କଥା,
ବିଷର୍ଣ୍ଣ ରାତିରେ ଛିନ୍ନ ବଉଦରେ ବିବର୍ଣ୍ଣ ଜହ୍ନର
ଏ ପାରିରୁ ଭାସିଯାଇ ସେ ପାରିରେ ମରିଯିବା କଥା ।

ଚଇତ୍ରର ଜୀର୍ଣ୍ଣ ଦେହ ଏ ବାଲିର ଛୋଟ ଛୋଟ ଭଉଁରୀ ଭିତରେ
ଏପାଖ ସେପାଖ ଯାଏ ଉଡି ଉଡି ତୁମେ ନିଅ ସାଉଁଟି ସାଉଁଟି
ତୁମେ ପୁଣି ଭଲପାଅ ତୁମେ ପୁଣି ହାତଧରି ଡାକ
ତୁମର ଆତ୍ମା ବା କାହିଁ ? ମୋ ଦେହ ବା ଜୀବନ୍ତ କେଉଁଠି ?

ମେଘର ଇସ୍ପାତ ଦେହ ସ୍ଥିର ପୁଣି ବାଧାପାଏ ସେଠି ତୁମ ମନର କପୋତ,
ଆଖିର କପୋତ ମୋର ଫେରିଆସେ ଯେତେବେଳେ ଆକାଶର ଭ୍ରାନ୍ତି ପାରି ହୋଇ
ତୁମର ଦେହରେ ଏହି କ୍ଲାନ୍ତି ଆଉ ଭୋକ ଶୋଷ ଉତ୍ତେଜନା
ଖେଦ ଆଉ କୋହର ଭିତରେ
ମୋ ଦେହର ସ୍ୱପ୍ନ ଧରି ବୋହିଯାଏ ସମୟର ନଈ ।

ନିସ୍ତବ୍ଧ ଦିପହରେ ପତ୍ରଝଡ଼ା ଶୁଭେ ନାହିଁ ଖରାର ନିଶ୍ୱାସ,
ଝାଉଁବଣ ମିଶିଯାଏ ଧୂଆଁ ହୋଇ ଆକାଶ ଭିତରେ
ମନେ ମୋର ପଡ଼େ ନାହିଁ କେବେ ମୋର ଆଖିର କପୋତ
ତୁମର ସନ୍ଧାନ ଦିନେ ପାଇଥିଲା କଟକ ବା ଉଜ୍ଜୟିନୀ ସହର ପ୍ରାନ୍ତରେ ।



# ନିହତ ଗୋଧୂଳି

ଏହି ଦୂର ଆକାଶର ଧୂସର ଦେହରେ
ଶୀତର ପାଉଁଶ ଗୋଳି ଆସେ ଏ ପଉଷ କୁହୁଡ଼ି ଓ କାକରର ରାତି,
ଏ ବର୍ଷର ନଷ୍ଟ ଆତ୍ମା ଏ ବାଲିର ଅପନ୍ତରା ପରେ
ଭୁଲିଯାଏ ବାଟ ଅବା ଭୁଲିଯାଏ ପୃଥିବୀର ସ୍ମୃତି ।
ତୁମେ ଆଜି ପାରି ହୋଇ ଅନ୍ୟ କେଉଁ ପଉଷର ଅସ୍ତଗାମୀ ତାରା ଓ ଅନ୍ଧାର
ସମୁଦ୍ରର ମରୁଭୂମି ଆକାଶର ଏହି ନିଃସଙ୍ଗତା,
ଶ୍ରାବନ୍ତୀ ବା ଉଜ୍ଜୟିନୀ ତାମ୍ରଲିପ୍ତ ଦିନାନ୍ତ ଭିତରୁ
ଆମର ଏ ପୃଥିବୀର ଦିନାନ୍ତକୁ ଆସିଚ ବା ଏକା ।
ସ୍ତିମିତ ନିସ୍ତେଜ ସ୍ଥିର ଅସ୍ତଗାମୀ ତାରା,
ସ୍ତିମିତ ନିସ୍ତେଜ ତଳେ କୁହୁଡ଼ି ଓ ଝାଉଁର ଜଙ୍ଗଲ,
ଅବସନ୍ନ ସହରର ଏ ନିଶ୍ଚଳ ସ୍ଥବିର ଦେହରେ
ଏ ବର୍ଷର ନଷ୍ଟ ଆତ୍ମା ତୁମର ବା ପାଇଥିବ ଦେଖା ।
ସ୍ତିମିତ ତାରାର ଲୁହ ଆକାଶରୁ ପୁଣି ଆକାଶକୁ
ଶୀତର କୁହୁଡ଼ି ଯାଏ ପାରି ହୋଇ ଆଜି ଯେବେ ଦିଗନ୍ତରୁ କେତେ ଦିଗନ୍ତକୁ ।

ଆମର ଏ ପୃଥିବୀର ନଷ୍ଟ ଦେହ ନିହତ ଗୋଧୂଳି
ତୁମର ଦେହର ରଙ୍ଗ ଧରିରଖେ ଜୀର୍ଣ୍ଣ ପତ୍ର ଶାଖାପରେ
ଆମେ ସବୁ ସେଥିପାଇଁ ସନ୍ଧ୍ୟାବେଳେ ସମୁଦ୍ର କୂଳରେ
ଏକଯୁଟ ହେଉ ଆସି ନିଜ ନିଜ ସତ୍ତାର ବିହ୍ୱଳେ ।
ଏ ବର୍ଷର ନଷ୍ଟ ଆତ୍ମା ନିଛାଟିଆ କେତେବେଳେ ଅନ୍ଧାର ଭିତରୁ
ହଠାତ୍ ଆସି ଛିଡ଼ାହୁଏ ସାମ୍ନାରେ ସ୍ୱେଟର ସାଲ୍ ଘୋଡ଼ି ହୋଇ
କେତେବେଳେ ନିଛାଟିଆ ଲାଇଟ୍‌ପୋଷ୍ଟ ପୋକ ଆଉ କୁହୁଡ଼ି ଭିତରୁ
ସେ ରହେ ବା ଗତିହତ ପଥଭ୍ରାନ୍ତ ନିର୍ବାକ ଅନାଇଁ ।

ବାଟୋଇ ପକ୍ଷୀର ଗୀତ ଆଜି ଯଦି ମୌନ ହେଲା ସରିଗଲା ଗ୍ରାମଫୋନ୍ ଗୀତ
ସେକେଣ୍ଡ ସୋ' ଶେଷ ହେଲା ଶେଷ ହେଲା ଯାତାୟତ କଳରୋଳ ସଭା ଓ ବକ୍ତୃତା
ପତ୍ରସବୁ ଝଡ଼ିଗଲା ନିଛାଟିଆ ସଡ଼କ ଉପରେ
କ୍ଳାନ୍ତ ଯଦି ନଇଁ ଗଲା ଆକାଶରେ ଜହ୍ନର ଭ୍ରୂଲତା;
ଏ ବର୍ଷର କ୍ଳାନ୍ତି ଯେତେ ପୁଞ୍ଜୀଭୂତ ଅପମାନ ପ୍ରାଣର ବେଦନା
ଆଉ ନଷ୍ଟ ଦେହ ମନର ନିରାଶା
ବନ୍ଧୁହାନୀ, ପିତୃହାନୀ ହତାଶ ପ୍ରେମ ବା' କାର ଚାକିରିର ଆଶା
ପୁଣି କାନ୍‌ସର ଟିବିର ହତାଶା,
କ୍ଳାନ୍ତ ହୋଇ ସବୁ ଯଦି ନିଶବ୍‌ଦେ ପଡ଼ିଚି ଶୋଇ ମଠ ଓ ହୋଟେଲ୍
ସବୁ ଶୂନଶାନ ସ୍ଥିର ଓ ନିଶ୍ଚଳ
ମୁଁ ଆଜି ତଥାପି ଚାଲେ ତୁମର ଠିକଣା ଖୋଜି ନିଛାଟିଆ ବାଟଘାଟ
ବାଲି ଆଉ ଝାଉଁର ଜଙ୍ଗଲ ।

ଏ ବର୍ଷର ନଷ୍ଟ ଆତ୍‌ମା ଦେହ ଏ ରାତିର, ତୁମେ ଯଦି ତା' ଭିତରେ ଅଛ
ରାତିର ବିନାଶ ହେଉ ନଷ୍ଟ ହେଉ ଦେହ ମୋର ନଷ୍ଟ ହେଉ
ପୃଥିବୀର ମର୍ମାନ୍ତିକ ଆଶା
ବିନାଶ କାମନା ହେଉ ଲୋପ ହେଉ ପୃଥିବୀର ବର୍ଷା ଆଉ ମେଘର ପିପାସା
ଶାନ୍ତ ହେଉ ସବୁ ଚେଷ୍ଟା ବିଫଳ ପ୍ରୟାସ ଯେତେ, ମୌନ ହେଉ
ମଣିଷର ଭାଷା ।

ଧୂସର ବିବର୍ଣ୍ଣ ଧ୍ୱସ୍ତ କେଉଁ ଏକ ଗୋଧୂଳିର ଅପନ୍ତରା ପରେ
ମୁଁ ଯଦି ତୁମର କେବେ ତା ପରେ ବା ପାଏ ପୁଣି ଆଉ ଥରେ ଦେଖା
ସ୍ୱାମୀ ଆଉ ଜନରବ ପ୍ରଶ୍ନ ପୁଣି ଜଡ଼ ଜଗତର
ସବୁ ଲୋପ ପାଇଥିବ ଦେହ ମନ ସମୟ ଓ ପ୍ରେମ ଚିଠି ଲେଖା ।
ଦୂରର ଦିଗନ୍ତ ମୋର ନିଭିଯାଏ ଏ ରାତିରେ... ନିଭିନାହିଁ ତାରା
ତାରା ଆସି ଜମାହୁଏ ଫ୍ଲାଗଷ୍ଟାଫ୍ ଚାରିପାଖେ... ନିଭିଯାଏ ଆଶା
ଜହ୍ନ ଆଉ କୁହୁଡ଼ିର ସ୍ଥବିରତା ମାଡିବସେ ମୂର୍ଚ୍ଛାହତ ସହରର ଛାତି
ଏ ବର୍ଷର ନଷ୍ଟ ଆତ୍‌ମା ଖୋଜି ଅବା ପାଏ ନାହିଁ ନିଃସହାୟ
ମଣିଷର ମର୍ମାନ୍ତିକ ଭାଷା ।

ମୁଁ ତୁମକୁ ଭଲପାଏ ଆଜିର ଏ ପଉଷ ରାତିରେ
ତୁମର ଦେହର ତାତି ନଖ ଆଉ ଦାନ୍ତ ଧାଡ଼ି ଧାଡ଼ି
ମୁଁ ତୁମକୁ ଖୋଜେ ଆଜି ଏ ମାଟିର ମର୍ମଦାହ ଦେଇ
ଆଜି ଯେବେ ପୃଥିବୀର ନଷ୍ଟ ଦେହ ନିହତ ଗୋଧୂଳି ।



# ହରେକୃଷ୍ଣ ଦାସ (ଏକ)

ଆକାଶର ଅନ୍ଧାରରେ ଏ ପୃଥିବୀ ବୋରାବର ଚାଲେ
ଭାରସାମ୍ୟ ଠିକ୍ ରଖି ଗ୍ରହ ତାରା ଜ୍ୟୋତିଷ୍କ ସହିତ
ଭାରସାମ୍ୟ ଠିକ୍ ରଖେ କଟକରେ ହରେକୃଷ୍ଣ ଦାସ...
ଯୌନ ଆଉ ପ୍ରଜନନ କ୍ରୀୟା ଚାଲେ ଠିକ୍ ନୟମିତ ।

ଆମର ଏ ପୃଥିବୀରେ କେବେ କିଛି ଲୋପ ହୁଏ ନାହିଁ
ମଶା, ମାଛି, ପୋକଯୋକ ଲୋକବାକ କାଉ ଓ ବାଦୁଡ଼ି
ରାତିର ଅନିଦ୍ରା ଆଉ ଦିପହର ଝାଳ ଆଉ ତାତି
କେବେ କିଛି ଯାଏ ନାହିଁ ପୂରାପୁରି ଦେଶରୁ ଉଚ୍ଛୁଡ଼ି ।

ରାଜନୀତି ଭଲଲାଗେ ଭଲଲାଗେ ନାଟକ କବିତା
ହରେକୃଷ୍ଣ ଦାସ ପଢ଼େ ପ୍ରତିଦିନ ଖବର କାଗଜ
ସିନେମାରେ ଛବି ପୁଣି ନିୟମିତ ଚାଲିଛି ବଦଳି
ନିୟମିତ ଛୁଟି ହୁଏ କିଲଟରୀ ଇସ୍କୁଲ କଲେଜ ।

ନିୟମ ଓ ହାର୍ମୋନି ଭାରସାମ୍ୟ ଠିକ୍ ଅଛି ସବୁ
ଅବାକ୍ ଆଶ୍ଚର୍ଯ୍ୟ ହୁଏ ହରେକୃଷ୍ଣ ଦାସ ଥରେ ଥରେ
ଚଉଧୁରୀ ବଜାରର ବିକାକିଣା ଠେଲାଠେଲି ଦେଖି
କାହାର ଏକତା ଏଠି ବ୍ୟବସାୟ କାର୍‌ବାର କରେ !

ମେଘ ଓ ତାରାର ଯେତେ ଯାତାୟତ ରେଳ ମଟରର
ମଶା ଓ ମାଛିର ଯେତେ ଯାତାୟତ ଦିନ ଓ ରାତିର
ହାଫ୍‌ଛୁଟି ଶନିବାର ମାଟିନି ସୋ ରବିବାର ଦିନ
ଏସବୁ ନିୟମ ତଳେ କାମକରେ ଗୁପ୍‌ଚୁପ୍ ମିଷ୍ଟିକ୍ କା'ର ପ୍ରୟୋଜନ ।

ଏ ପୃଥିବୀ ଠିକ୍ ଚାଲେ ଠିକ୍ ଚାଲେ ସମୟର ଗତି
ଆଜିର ନାୟିକା ପାଏ ମାଆ ପାଟ୍ କାଲି ସିନେମାରେ
ଆକାଶର ତାରା ଯେତେ କେବେହେଲେ ଗଣିହୁଏ ନାହିଁ
ଆଶ୍ଚର୍ଯ୍ୟ ପୃଥିବୀ ହୁଏ ହତବାକ୍ ଅଭିଭୂତ ସୂର୍ଯ୍ୟାସ୍ତ ଭିତରେ ।

ସୂର୍ଯ୍ୟାସ୍ତର ଆକାଶରେ ନରାଜ ଓ କାଠଯୋଡ଼ୀ ନିଭେ
ଗୋଟି ଗୋଟି ଜଳିଉଠେ ତାରା ଆଉ ଦୋକାନ ଆଲୁଅ
ମାର୍କସ୍‌ବାଦ ଗାନ୍ଧିବାଦ ପାମ୍ପଲେଟ୍ ଟିକଟ ବିକାରେ
ଉତ୍ତେଜନା ବେଶ୍ ଜମେ ନାରୀ ଆଉ ଶ୍ରମିକ ବିଦ୍ରୋହ ।

ହରେକୃଷ୍ଣ ଦାସ ବସେ ସ୍ୱପ୍ନ ଦେଖି ଝରକା ପାଖରେ
ସେପାଖ କୋଠାର ଝିଅ ପ୍ରତିଦିନ ବୁଲିବାକୁ ଯାଏ
ପ୍ରତିଦିନ ଏ ପୃଥିବୀ ଆକାଶର ଅପନ୍ତରା ଡେଇଁ
ଅଜ୍ଞାତ ବା ଅବଜ୍ଞାତ କେଉଁ ଦୂର ଅନ୍ଧାରକୁ ଧାଏଁ ?



# ହରେକୃଷ୍ଣ ଦାସ (ଦୁଇ)

ସଂଧ୍ୟା କେବେ ଜଳିଯାଏ ଗାଢ଼ଲାଲ୍ ବଣନିଆଁ ପରି
ଆକାଶର କଳା ଧଳା ବଉଦର ପାହାଡ଼ ଉପରେ
ସଂଧ୍ୟା ପୁଣି କେବେ ନିଭେ କୁଢ଼ କୁଢ଼, କଳା କଳା ବଉଦ ଭିତରେ
କୋଇଲା ଚୁଲିର ଶେଷ ଝିକି ମିକି ରଡ଼ ନିଆଁ ପରି ।

ଅରଖ ଫୁଲର ଫିକା ବାଇଗଣି ବଉଦ ଉପରେ
ସୂର୍ଯ୍ୟ କେବେ ରହିଯାଏ ମୁହୂର୍ତ୍ତକ ହଳଦିଆ ପ୍ରଜାପତି ପରି
ଆକାଶର ଫିକା ନେଳି ହଳଦୀ ଓ ବାଇଗଣି ମୁଠା ମୁଠା ବଉଦ ଭିତରେ
ସୂର୍ଯ୍ୟ ପୁଣି କେବେ ନିଭେ ଧୀରେ ଧୀରେ ଛୋଟ ହୋଇ
ବ୍ୟାଟେରୀ ନ ଥିବା ସାନ ଟର୍ଚ୍ଚ ଲାଇଟ୍ ପରି ।

ସବୁଜ କବିତା ପରି ହୁଏତ ବା ଏ ପୃଥିବୀ ରୋମାଣ୍ଟିକ ସ୍ୱପ୍ନାଭ ସୁନ୍ଦର
ରେଡିଓର ଗୀତପରି ହୁଏତ ବା ଏ ଜୀବନ ଦେହହୀନ କେତୋଟି ମୂର୍ଚ୍ଛନା
'ଧୂପ'ର ବିରହ ପରି ହୁଏତ ବା ଏହି ମନ ଆକାଶର ଭାରାତୁର ମେଘ
ହୁଏତ ବା ଏହି ଦେହ ପମ୍ପାସର ନୀଳ ନୀରେ ନାଗଲୋକ କନ୍ୟାର କାମନା ।

ତଥାପି ଶୀତର ଥଣ୍ଡା ରାତି ଆଉ କୁହୁଡ଼ିର ଧୂଆଁଳିଆ ଦେହ
ଗଳିରୁ ଗଳିରୁ ଛୁଇଁ ଛୁଇଁ ଲାଇଟ୍ ପୋଷ୍ଟ ବଗୁଲିଆ ସ୍କୁଲ ପିଲାପରି
ଚଉଧୁରୀ ବଜାରର ଆଲୁଅ ଓ ଠେଲାଠେଲି ଗହଳି ଭିତରେ
ଏ ପୃଥିବୀ ଜଣାଯାଏ ବନ୍ଧୁହୀନ ଜ୍ଞାତିହୀନ କେଉଁ ଏକ ଅନ୍ୟ ଦେଶ ପରି ।

ଆଶା ଓ ନିରାଶା ଯେତେ ପ୍ରଚାର ଓ ସଭା ପରେ ଯୋଜନା ଓ କମିଶନ୍ ପରେ
ଆଶା ଓ ନିରାଶା ଯେତେ ପ୍ରେମ ଚିଠି ଲେଖା ପରେ ଚାକିରି ଓ ବାହାଘର ପରେ

ଚଉଧୁରୀ ବଜାରର ଆତ୍ମା ଦେଇ ଏତେ ଦେହ ନିରାଶା ଓ ଆଶାର ମଣିଷ
ମିଶିଯାଏ ତେଉ ହୋଇ ଦୋକାନରୁ ଦୋକାନକୁ
ନାଲି ନେଳି ଆଲମାରି କାଚ ଆଉ ଆଲୁଅ ଭିତରେ ।

ହରେକୃଷ୍ଣ ଦାସ ଚାହେଁ ଅବାକ ଆଶ୍ଚର୍ଯ୍ୟ ଆଜି
ଏତେ ଭିଡ଼ ଏତେ ଲୋକ ଏତେ ତେଜ ଦୋକାନ ଆଲୁଅ
ପେଟ୍ରୋଲ ବାସ୍ନାରେ ସରକାରୀ ଜିପ୍‌ଗାଡ଼ି ଷ୍ଟିଅରିଂ ହୁଇଲରେ
ଏହି ଛୁଆଁ ପ୍ରଥମ ଶୀତର,
ହରେକୃଷ୍ଣ ଦାସ ଚାଲେ ସହରର ବନ୍ଧୁହୀନ ଜ୍ଞାତିହୀନ
"ନମସ୍କାର" "ଜୟହିନ୍ଦ୍" "ସଲାମ" ଭିତରେ
ହରେକୃଷ୍ଣ ଦାସ ଦିଏ ହଠାତ୍ ଗାଡ଼ିର ବ୍ରେକ୍-
ଅକସ୍ମାତ୍ ଏ କି ଭୟ-
କେଉଁ ଘୋର ଦୁର୍ଦ୍ଦିନ ବା କେଉଁ ଘୋର ମହାପାତକର ।

ଭୟ ଆଉ ପାପ ମିଶି ଏ ସମୟ ଅନ୍ତଃସତ୍ତ୍ୱା...ଜୀବନର ଭଗ୍ନାଂଶ କେବଳ
ତେଣୁ ଏହି ସହରର ବିବର୍ଣ୍ଣ ଦେହରେ ଶୀତ ଖଦଡ଼ ଓ ଉଲ୍‌ର ପୋଷାକ
ଭିତରେ ହଠାତ୍ ଆସି ଛିଡ଼ାହୁଏ ସାମ୍ନାରେ
ଅଭିଶପ୍ତ ମଣିଷର ପାପ ଆଉ ଭୟର ପ୍ରେତାତ୍ମା ।

ଅପରାଜିତାର ଗାଢ଼ ବାଇଗଣି ବଉଦ ଉପରେ
ସୂର୍ଯ୍ୟ କେବେ ରହିଯାଏ ମୁହୂର୍ତ୍ତକ ହଳଦିଆ ପ୍ରଜାପତି ପରି
ମଣିଷର କେତେ ସ୍ୱପ୍ନ ଆଶା ଓ ନିରାଶା କେତେ ଯୋଜନା ଓ କମିଟି ଭିତରେ
ସୂର୍ଯ୍ୟ କେବେ ନିଭିଯାଏ ଆସ୍ତେ ଆସ୍ତେ ଛୋଟ ହୋଇ
ବ୍ୟାଟେରୀ ନ ଥିବା ସାନ ଟର୍ଚ୍ଚ ଲାଇଟ୍ ପରି ।



# ହରେକୃଷ୍ଣ ଦାସ (ତିନି)

ସମୟ ସହିତ ତାର ସେଦିନର ଅଭିସାର *ମ୍ୟାଜିକ୍ ମୁହୂର୍ତ୍ତ
ପକ୍ଷୀମାନେ ହଠାତ୍ ଉଠିଲେ ଗାଇ : ଆଶ୍ଚର୍ଯ୍ୟ ସେ ରାତି !
ସମୟ ସହିତ ସେହି ଅଭିସାର ମୁହୂର୍ତ୍ତରେ
କେତେ ପକ୍ଷୀ କେତେ ଫୁଲ କେତେ ବ୍ୟାଣ୍ଡ୍ ବାଜା !
ଅବାକ୍ ଆଶ୍ଚର୍ଯ୍ୟ ହୋଇ ସେଦିନ ତା କୋଠା ଝରକାରୁ
ହରେକୃଷ୍ଣ ଦାସ ବସି ଦେଖୁଥିଲା
ଫୁଲ ଓ ପକ୍ଷୀର ଭିଡ଼
କେତେ ହସ ନାଚ ଗୀତ କେତେ ସ୍ଲୋଗାନ୍ କେତେ ବ୍ୟାଣ୍ଡ୍ ବାଜା ।

ରାସ୍ତାଯାକ ଯୋତା ଚଟି କାଚଗୁଣ୍ଡ ଭଙ୍ଗା ସାଇକଲ୍
ଆସ୍ତେ ଆସ୍ତେ ଜଳୁଥିବା ଜିପ୍‌ଗାଡ଼ି ଓ ଏସ୍.ଟି.ସି ବସ୍
ଛିଣ୍ଡା ବହି ଖାତା ବ୍ୟାଗ୍ ରକ୍ତଭିଜା ସାର୍ଟ ଓ ରୁମାଲ୍
ସନ୍ଧ୍ୟାର ନିଶ୍ଚଳ ଖରା, ପୋଡୁଥିବା ଗାଡ଼ି ଚକ ରବର ଧୂଆଁରେ
ବ୍ୟତିବ୍ୟସ୍ତ ରାସ୍ତା ପାଖ ଗଛ,
ଛାତ୍ର ଓ ଜନତା ସବୁ ଛତ୍ରଭଙ୍ଗ ଦେଲା ପରେ ଶୂନ୍‌ଶାନ୍ ରାସ୍ତା ଓ ପଡ଼ିଆ
ଶୂନ୍‌ଶାନ୍ କୋଠାଘର, ପୁଲିସ୍ ଗଲେଣି ଫେରି ଆମ୍ବୁଲାନ୍‌ସ ଗାଡ଼ି
ଲାଠି ଚାର୍ଯ ଗୁଳି ପରେ ଗାଡ଼ି ରିକ୍‌ସା ଚଳାଚଳ ବିଲ୍‌କୁଲ୍ ବନ୍ଦ ଏ ରାସ୍ତାରେ ।

ସେମାନଙ୍କ ଚେହେରାର ଛାଇପଡ଼େ ଫୁଟ୍‌ପାଥ୍ ରାସ୍ତା ଓ ଛକରେ
ଇରମ୍‌ରୁ ଇଞ୍ଚୁଡିରୁ କେତେ ଜେଲ୍ ଫାଟକ ଭିତରୁ
ସେମାନେ ଆସନ୍ତି ଫେରି ଧୋତି ଖଦି କୁର୍ତ୍ତାରେ

---

*"A Long time age we had made a tryst with destiny"*
*Jawaharlal Nehru*

ଗାନ୍ଧି ଟୋପି ଝୁଲା ବ୍ୟାଗ୍ ବାଡ଼ି ଧରି
ହଜି ମରି ଯାଇଥିବା ସ୍ଲୋଗାନ୍‌ରୁ, 'ପ୍ରସେସନ୍' 'ଜୁଲୁସ୍' ଭିତରୁ
ଏହି ଝାପ୍‌ସା କୁହୁଡ଼ିରେ
ବିଧାନ ସଭାର ଏହି ଭାଙ୍ଗିଥିବା କାଠବାଡ ଶୂନ୍‌ଶାନ୍ କୋଠା ସାମ୍ନାକୁ ।

ସେ ଯାତ୍ରା ସେ ସ୍ଲୋଗାନ୍‌ରେ ଥିଲା ଏକ ନିର୍ଭୀକ ନିର୍ଣ୍ଣୟ
ଆଜିର ସ୍ଲୋଗାନ୍ ଆଉ ଚିତ୍‌କାରର ଉଲଗ୍ନ ଏ ନିଷ୍ଠୁର ଆକ୍ରୋଶ
ଭୟଙ୍କର ଏହି କ୍ରୋଧ ଏହି ଘୃଣା
ସମୟର ଏ ସନ୍ଧିରେ ତା'ର କେଉଁ ନିର୍ଦ୍ଦିଷ୍ଟ ନିର୍ଣ୍ଣୟ ?

ହରେକୃଷ୍ଣ ଦାସ ଆଜି ଡାକ ତାର ବିଭାଗର କୋଠା ଝରକାରୁ
ଆଚ୍ଛନ୍ନ ଆଖିରେ ଦେଖେ କୁହୁଡ଼ିର ପ୍ରଚ୍ଛନ୍ନ ପ୍ରହର
କ୍ରମେ ଆସି ଢାଙ୍କିଦିଏ ନିଭି ନିଭି ଆସୁଥିବା ଓ ଏସ୍.ଟି.ସି.ବସ୍
ସେମାନଙ୍କ ଚେହେରାର ଛାଇ ପରି ଏ ନିଶ୍ଚଳ ଛନ୍ନ ଓ କୁହୁଡ଼ି
ସେମାନଙ୍କ ସ୍ଲୋଗାନ୍‌ର ପ୍ରତିଧ୍ୱନୀ ଶୋଷିନିଏ
ଆସେମ୍ବ୍ଲିର ନିର୍ଜନ ରାସ୍ତାରେ...

ଆଶ୍ଚର୍ଯ୍ୟ ସେ ହଜିଥିବା ମୁହୂର୍ତ୍ତର ସମୟର ଅଭିସାର ରାତି
ପକ୍ଷୀ ଆଉ ଫୁଲ ସବୁ
ହସ ଗୀତ ବ୍ୟାଣ୍ଡ୍ ବାଜା
କେବେ ଥିଲା ? କେଉଁଠି ? କେଉଁଠି ?



# ହରେକୃଷ୍ଣ ଦାସ (ଚାରି)

କେତେ ମୃତ୍ୟୁ ଜନ୍ମ କ୍ଷୟ କେତେ ନଷ୍ଟ ଶତାବ୍ଦୀର
ବିଲୁପ୍ତି ଓ ପରିବର୍ତ୍ତନରେ
ଯାଯାବର ତା' ସତ୍ତାର ଯାତ୍ରା ବା ଆରମ୍ଭ ହେଲା
ଆଜିର ଏ ଶତାବ୍ଦୀର ମ୍ରିୟମାଣ ଅସ୍ତ ଆକାଶରେ
ଯେତେବେଳେ ଉତ୍କଣ୍ଠା ଓ ଆଶଙ୍କାର ପ୍ରଶ୍ନ ଚିହ୍ନ ଏତେ
ତା' ସହିତ ଦେଖା ମୋର ଆଜି ପୁଣି ଅକସ୍ମାତ୍
ରାଜଧାନୀ ସି.ଆର୍.ପି ଛକରେ ।

ଆଜି ତା'ର ଚେହେରାରେ ବିଶେଷ ଯେ ନୂଆ କିଛି
ବିଶେଷ ତଫାତ୍ କିଛି ଜଣା ପଡ଼େ ନାହିଁ
ମୁଣ୍ଡରେ ବାବୁରି ବାଳ ସରୁ ନିଶ ନାକ ତଳେ
ସେହି ଚେଷ୍ଟା ଆତ୍ମ ପ୍ରତିଷ୍ଠାର
ତଫାତ୍ ଏତିକି ଯାହା ଫେସନ୍‌ରେ ପୋଷାକରେ
ହିନ୍ଦି ଆଉ ଇଂରାଜି ମିଶାମିଶି ଓଡ଼ିଆ କଥାରେ ।
ହରେକୃଷ୍ଣ ଦାସ୍ ଆଜି ସି.ଆର୍.ପି. ଛକରେ ଦେଖେ
ଆକାଶରେ ଅଗଣିତ ତାରା
ଅଗଣିତ ପ୍ରଶ୍ନବାଚୀ ଅସଂଖ୍ୟ ସପ୍ତର୍ଷି ପରି
ଆଜିର ଏ ଶତାବ୍ଦୀର ନଷ୍ଟ ଦେହ ଶେଷ ଦଶକରେ ।

ସେଦିନ ବି ଠିକ୍ ସେଠି ଅନ୍ୟ ଏକ ଶତାବ୍ଦୀର ପ୍ରଶ୍ନ ଚିହ୍ନ ଧରି
ରାତି ଯେବେ ଦ୍ୱିଧାଗ୍ରସ୍ତ ହତବାକ୍ ଅନ୍ୟ ଏକ ସହରର ନିର୍ଜନ ରାସ୍ତାରେ
ହରେକୃଷ୍ଣ ଦାସ୍ ତାର ସିଲ୍‌କର ପଗଡ଼ି ତଳୁ ଆଶ୍ଚର୍ଯ୍ୟ ଅବାକ
ଶୁଣିଲା ଘୋଡ଼ାର ଶବ୍ଦ

ଘୋଡାର ଆବାଜ ଗଲା ସହରର ସୀମା ପାର୍ ହୋଇ
ବିପର୍ଯ୍ୟସ୍ତ ଯେତେ ଆଶା କାମନାର ମୃତ୍ୟୁ ଖୋଜି
ମହା ପରିନିର୍ବାଣର ବୋଧିଦ୍ରୁମ ଆଡ଼େ ।

ତାପରେ ସେଦିନ ପୁଣି...
ମଝିରେ ଶତାବ୍ଦୀ କେତେ ଲୋପ ପାଇ ଯାଇଥିଲା
ଯାଯାବର ତା' ଯାତ୍ରାର ଖବର ନ ଥିଲା କିଛି...
କିନ୍ତୁ ପୁଣି ସେଦିନ ସନ୍ଧ୍ୟାରେ
ଶାଗୁଣା ବହୁତ ଥିଲେ ଆକାଶରେ
ହିମାଳୟ ପାରି ହୋଇ ଇତିହାସ ଆସିଥିଲା
ବାରୁଦ ଗୋଲାର ଧୂଆଁ ଉଲ୍ ଟୋପି ଉଲ୍ ପୋଷାକରେ ।
ଦିଲ୍ଲୀର ନିର୍ଜନ କୋଠା ଉହାଡ଼ରେ ଛିଡ଼ା ହୋଇ ହରେକୃଷ୍ଣ ଦାସ
କପାଳରୁ ଝାଳ ପୋଛି ସେଦିନ ସନ୍ଧ୍ୟାରେ
ମନେ ମନେ ଠିକ୍ କଲା ଏଥର ଶିଖିବା ପାଇଁ ଫାର୍‌ସି ବା ଆରବୀ ଭାଷା
ସମୟର ଏହି ନୂଆ ସୁବିଧା ଓ ନୂଆ ସୁଯୋଗରେ ।

କେଉଁ ସ୍କୁଲ ମଦ୍ରାସାରୁ ଉର୍ଦ୍ଦୁ ବା ଫାରସି ଶିଖି ହରେକୃଷ୍ଣ ଦାସ୍
ମୋଗଲ କୋର୍ଟରେ ଥିଲା କିରାନୀ ବା ...ଗଜପତି ଉଆସ ଭିତରେ
କେଉଁ ସ୍କୁଲ ଚାହାଳିରୁ କରଣି ଅକ୍ଷର ଶିଖି ଲେଖୁଥିଲା
ଜମାଖର୍ଚ୍ଚ ଖାତାର ହିସାବ...
ଫିରିଙ୍ଗି ଅମଳ ବେଳେ କେବେ ପୁଣି ପାସ୍ କରି ହାଇସ୍କୁଲ ପାଠ
ହରେକୃଷ୍ଣ ଦାସ ଥିଲା କେଉଁ ଛୋଟ ସହରର ଥାନା ବାବୁ
କିରାନୀ ବା ଟିକସ୍ ଦାରୋଗା...
ତଥାପି ତା ଚାହାଣିରେ ସେଦିନ ବି ଆଜି ପରି ସମୟର ସ୍ତବ୍ଧ ପ୍ରହେଳିକା
ସ୍ତବ୍ଧ ତାର ଦୁଇ ଆଖି ପ୍ରଶ୍ନମୟ ବ୍ୟସ୍ତ ଓ ବିବ୍ରତ
ନୂଆ ନୂଆ ପୋଷାକରେ ବାରମ୍ବାର ସେହି ଚେଷ୍ଟା ଆତ୍ମ ପ୍ରତିଷ୍ଠାର ।

ଆଦିମ ଯୁଗରୁ ତାର ଆଜିଯାଏ ଯାତ୍ରାର ଶେଷ ଅବା କେବେ

ଦ୍ୱିଧାଗ୍ରସ୍ତ ତା ମନର ଅସହାୟ ଆଶଙ୍କା ଭିତରେ
ସଭ୍ୟତା ଓ ସାମ୍ରାଜ୍ୟର ବିପ୍ଲବ ଓ ଯେତେ ବିବର୍ତ୍ତନ
ଅର୍ଥନ୍ୟାସ ପାଇ ନାହିଁ,
ତା' କ୍ଷୁଦ୍ର ସତ୍ତାର ଚିର ଦ୍ୱନ୍ଦ୍ୱ ଭରା ଭୟ ଓ ଭ୍ରାନ୍ତିରେ
ଟେକ୍ସ୍ଟ ବହି ଛଡ଼ା କେବେ ଇତିହାସ ଅର୍ଥ ପାଇ ନାହିଁ ।

ଦ୍ୱିଧାଗ୍ରସ୍ତ ଯାତ୍ରା ତାର ଚିରନ୍ତନ ଶୁଭ ହେଉ
ଚିରନ୍ତନ ଜାରି ରହୁ ତା' ଆଖିର ନିର୍ବୋଧ ଚେତନା
ନେତା ମନ୍ତ୍ରୀ ବିଧାୟକ ଦାର୍ଶନିକ କବି ଶିଳ୍ପୀ ଇତ୍ୟାଦି ପ୍ରତିଭା
ଲୋପ ପାଇ ଗଲା ପରେ, ଅଫିସ୍‌ରେ କଚିରୀରେ
ଡଟ୍‌ପେନ୍ ଫାଇଲ୍‌ରେ ତାର କ୍ଷୁଦ୍ର ସତ୍ତା ରହୁ
ମୃତ୍ୟୁହୀନ ମଣିଷର ସ୍ଥିର ବିନ୍ଦୁ ହୋଇ,
ହରେକୃଷ୍ଣ ଦାସ
ବାରମ୍ବାର ଫେରୁ ଥାଉ ମୃତ୍ୟୁରୁ ଅମୃତ ଖୋଜି
କୋର୍ଟକୁ, କଚିରୀକୁ
ବହମାନ ସମୟର 'ପତନ ଓ ଅଭ୍ୟୁଦୟ' ଅର୍ଥନ୍ୟାସ ପାଇଁ ।

xxx

ସେକ୍‌ସନ ଅଫିସର- ଗେଜେଟେଡ୍-କ୍ଲାସ୍‌ଟୁ - ଜୁନିଅର
ହରେକୃଷ୍ଣ ଦାସ
ଆଜି ଯେବେ ରିକ୍‌ସା ଖୋଜେ ରାଜଧାନୀ ସି.ଆର.ପି ଛକରେ
ସମୟର ଇସ୍ତାହାର ଶୁଣେ ଯେବେ ଟିଭିରେ ଓ ରେଡିଓରେ
ମଟର ହର୍ଣ୍ଣରେ
ଆହା.... ରିକ୍‌ସା ଚଢୁ ହରେକୃଷ୍ଣ ଦାସ
ଦ୍ୱିଧାଗ୍ରସ୍ତ ତା' ଆଖିରେ ପ୍ରଶ୍ନ ଚିହ୍ନ ପ୍ରଶ୍ନ ଚିହ୍ନ
କ୍ଷୟମାନ ଶତାବ୍ଦୀର ଶେଷ ଦଶକରେ ।



# ପିକ୍‌ନିକ୍

ଯେଉଁଠି ଜୁଆର ଆସେ ପୋତିଦେଇ ମୁହାଣର ଘାସ ଖରିବଣ
ଯେଉଁଠି ପାଣିରେ ଆସେ ଅକସ୍ମାତ ଫେଣ ଭାସି ଓଲଟାଇ ମଗରର ପିଠି
ଯେଉଁଠି ପବନ ଯାଏ ଖୋଜି ଖୋଜି ସାପ ଗାତ ଗୁଡ଼ିକଙ୍କ ଘାସ ତଳେ ତଳେ
ଯେଉଁଠି ଧୂସର ସବୁ ବାଲି ଓ ଚିଲର ରଙ୍ଗ କଂକଡ଼ା ଓ କୋକିଶିଆଳିର
ଆଜି ସେଠି ଯାଉଥିବ ଅସ୍ତହୋଇ ସ୍ତବ୍ଧ ହୋଇ ଏ ରାତିର ଜହ୍ନ ।

ଆମେ ସବୁ ବେଳେ ବେଳେ ରୋମାଣ୍ଟିକ ମନନେଇ ଗପସପ କରି
ସାହିତ୍ୟ ଓ ରାଜନୀତି ଛାଡ଼ି ଦେଇ ଚିଠାକରୁ ଯିବାକୁ ସେଠିକି
ଟିଣ ଦୁଧ, ଚା, ଷ୍ଟୋଭ
ସିଗାରେଟ୍ ଡିଆସିଲି ଯଥେଷ୍ଟ ଯଥେଷ୍ଟ
କ୍ୟାମେରା ଓ ଗ୍ରାମଫୋନ୍, ଆଉ ପୁଣି ଯଦି ହୁଏ ଜଣେ ଜଣେ ଆମର
ପ୍ରେମିକା...
ଜହ୍ନଯାଏ ଧୀରେ ଧୀରେ ଶେଷକୁ ନିସ୍ତେଜ ହୋଇ
ଆମେ ସବୁ ଚାହିଁ ଦେଖୁ ବାରବାଟି ଚାରିପାଖେ ନିଛାଟିଆ ଗଡ଼ର ପରିଖା ।

ହାତ ଯଦି ରହିଯାଏ ଚୁପ୍‌ଚାପ୍ କେବେ କେବେ ପକେଟ୍‌ରେ ଟେବୁଲ ଉପରେ
ଆମେ ସବୁ କଥା କହୁ ଚିଠି ଲେଖୁ ଟାଇପ୍ କରୁ ଗୀତ ମଧ ଗାଉ
ବେଳେ ବେଳେ ସ୍ୱପ୍ନ ଦେଖୁ-
ମାର୍କସବାଦ ଗାନ୍ଧିବାଦ ଆଲୋଚନା କରୁ...
ଜୁଆର ହୁଏତ ଆସେ ପୋତିଦେଇ ମୁହାଣର ଘାସ ଖରିବଣ
ତା' ପରେ ହଠାତ୍ ଯାଏ କଥା ସରି ଆମର ମୁହଁରୁ ।

ଆମର ସରିଚି ଶୋକ ସକାଳ ଓ ସଂଧ୍ୟାର ପ୍ରାର୍ଥନା

ଆମର ସରିଚି ଜନ୍ମ ସଂଗ୍ରାମ ଓ ସ୍ୱପ୍ନର ସାଧନା
ଆମର ସରିଚି ମୃତ୍ୟୁ ଦେହ ଆତ୍ମା ପ୍ରାଣର ବେଦନା
ଆମର ସରିଚି ମୁକ୍ତି ରାବଣ ଓ ରାଧାର ବନ୍ଦନା...।

କେଉଁଠି ଜୁଆର ଆସେ ପୋତିଦେଇ ମୁହାଣର ଘାସ ଖରିବଣ
କେଉଁଠି ଫେଣରେ ନାଚେ ଜୀବନର ଇନ୍ଦ୍ରଧନୁ ମରଣର ଆଦିମ ଆହ୍ୱାନ ?
କେଉଁଠି ପବନ ଯାଏ ଗୁଡ଼ିକଙ୍କ ଘାସ ତଳେ ଖୋଲି ଖୋଜି ପ୍ରାଚୀନ
ଏ ପୃଥିବୀର ପ୍ରାଣ ?
କେଉଁଠି ଧୂସର ବାଲି ଧରି ରଖେ ସ୍ମୃତି ସବୁ ଅସ୍ତଗାମୀ ଜହ୍ନର ସନ୍ଧାନ ?



# ଛୁଟିର ଖରା

ପାଛୁଡ଼ା ଧାନର ଚୋପା ଛାଇଯାଏ ଆକାଶ ଆକାଶ
ହଳଦିଆ ସୋରିଷ କିଆରୀ
ଅଶ୍ୱତ୍‌ଥ ଗଛର ଖରା, ନିଛାଟିଆ ଖଜୁରୀ ଗଛର
ପାଛୁଡ଼ା ଧାନର ଚୋପା ଆକାଶର ଏପାରି ସେପାରି ।
ନରମ ଆକାଶ ଆଉ ନାଲି କଇଁ ଶୂନ୍‌ଶାନ୍ ବେଣା ବାଲିଚର
ନିଛାଟିଆ ଢୋର ପାଣି ନିଛାଟିଆ ନେଳି ଶିଉଳିରେ
ହଳଦିଆ ଏଇ ଦି ପହର ।

କ୍ଳାନ୍ତି ମୋର ଧୋଇ ଯାଉ ନିଛାଟିଆ ନରମ ଖରାରେ
ଡାହୁକ ଡାକର ଖରା, ନାଲି ନାଲି ବରଫଳ ବେତକୋଳି ଖଜୁରୀ କୋଳିର
ଅତଡ଼ାରେ ଖଣା ଖାଲ ଆଉ ଧଳା ବାଲିଚର ଖରା
ଦେହ ମୋର ଧୋଇ ଯାଉ ଘାସ ଆଖିପତା ନରମ ଖରାରେ ।

ପାଛୁଡ଼ା ଧାନର ଚୋପା ଛାଇ ଯାଏ ଆକାଶ ଆକାଶ...
ଛାଇଯାଏ ଆକାଶରେ କାଚ ଆଉ ଚିକ୍ ଚିକ୍ ଜରିର କାଗଜ ।
ଦୋକାନର ପାହାଚରେ ଜରି ଆଉ କାଗଜର ଖରା...
ତୁମର ଓ ମୋ ଭିତରେ ଚା', କଫି, କାଚ ଗ୍ଲାସ
ଛୋଟ ଛୋଟ ଚାମୁଚରେ ଆଶଙ୍କା ଓ ଅବଶୋଷ
ଜୀବନର କ୍ଳାନ୍ତି କେତେ କାରୁଣ୍ୟ ଓ ପ୍ରାଣର ଦରଜ ।

ତୁମର ମନର କ୍ଳାନ୍ତି ଆଜି ଯଦି ଧୋଇଯାଏ ଟେବୁଲର ନରମ ଖରାରେ
ହଳଦିଆ ଚା', କଫି, ସରବତ ଦୋକାନ ଖରାରେ
ଆମର ଏ ବାଟଚଲା, ପୂଜାଛୁଟି, ଖରାଛୁଟି ଗୋଟି ଗୋଟି ରବିବାର

ଅସରନ୍ତି ଖରା ଆଉ ଦିପହର ଅବସନ୍ନ ଆସକ୍ତି ଭିତରେ
ହୁଏତ ତୁମେ ଓ ମୁଁ ପ୍ରାଚୀନ ଏ ପୃଥିବୀର ଏ ଦିଗନ୍ତ ଉପରେ
ପ୍ରାଚୀନ ଖରାର ବାଟ ଚିହ୍ନିପାରି ଆପଣାର ଦିଗ
ଆପଣାର ବାଟ ପୁଣି ପାଇବୁ ହଠାତ୍ ଫେରି...
ନରମ ଖରାର ମେଘ...
ଧାନର ନରମ ଖରା....
ଜୀବନର୍ ହଳଦିଆ ଛୋଟ ଛୋଟ ମୁହୂର୍ତ୍ତର ଆକସ୍ମିକ ନରମ ଦେହରେ ।

ପାଚୁଡ଼ା ଧାନର ଚୋପା ଛାଇଯାଏ ଆକାଶ ଆକାଶ
ଡ଼ାହୁକ ଡାକର ଖରା ନିଛାଟିଆ ବାଲିଚର ଖରା
ଆଜି ତେଣୁ ଡାକିନିଏ ସହରର ରେଳପୋଲ ଡେଇଁ
ତୁମକୁ ଛୁଟିର ଖରା ଝରାପତ୍ର ବାଲିଚର ଖରା ।
ଚୁପ୍ ଚାପ୍ ବାଲିଚର, ଗାଁ ସ୍କୁଲ, ଡାକ ପିଅନ ସାଇକେଲ ଘଣ୍ଟି
କେଉଟ ସାଇର ଢିଙ୍କି ଚୁପ୍‌ଚାପ୍, ଲୁଗା ନାହିଁ ଧୋବାତୁଠ ଆଡ଼େ
ଗୁରୁବାର ଚିତା ନାହିଁ ମାଣବସା ହୁଳହୁଳି ସଉତୁଣୀ ଶାଶୁ ବୋହୂ କଳି
ଶୂନ୍ ଶାନ୍ ତୁମ ଗାଆଁ ଆମ ଗାଆଁ
ବିଷର୍ଣ୍ଣ ଏ ଶ୍ରୀହୀନ ଖରାରେ ।

ହଳଦିଆ ଦିପହର ବୋରଝାଙ୍କି ଶିଉଳିର ଖରା
ନିଛାଟିଆ ଗହଣର ଗେଣ୍ଡାଳିଆ, ଘାସ ଆଉ ନରମ ଆକାଶ
ପାଚୁଡ଼ା ଧାନର ଚୋପା ଉଡିଗଲା ଆକାଶ ସେପାରି -
ତୁମର ଓ ମୋର ଏହି ଚା' କପି ଶୋଷ ଆଉ
ପୂଜା ଛୁଟି, ଖରା ଛୁଟି
ଅନ୍ତଃସାର ଶୂନ୍ୟ ଏଇ ନିଛାଟିଆ ଖରା ଓ ଆକାଶ ।



# ଦୃଷ୍ଟିର ଦିଗନ୍ତ

କେତେ କିଆ ଶିମ୍ବୁ କେତେ ଧାନଗଛ ପତର ଉପରେ,
ଥକାହୋଇ ଏଇ ଖରା ଫିକା ରଙ୍ଗ ଏହି ଦିପହର
ଝିଣ୍ଟିକାର ଫିକା ଦେହ ଘାସ ତଳେ ମିଶାଇ ମିଶାଇ
ନିଛାଟିଆ ବିଲ ଘାରି ଏହି ଖରା ଶୋଇ ପଡୁଥିବ ।

ହୁଏତ ବା ଏ ସହର ଆର ପାଖେ ଗୋଡ଼ିବାଣ ଫୁଲର ରଙ୍ଗରେ
ସମୟର ଏହି ଭୟ ସୂର୍ଯ୍ୟାସ୍ତର ନିରାଶା ଓ ନିଶାନ୍ତର ଶଙ୍କିତ ଚେତନା
ହୁଏତ ବା ଛପିଯିବ ପ୍ରଶ୍ନ ଓ ସମସ୍ୟା ସବୁ
ଦୁଃଖ ଓ ଦୁସ୍ୱପ୍ନ ଯେତେ
ଗୋଡ଼ିବାଣ ଫୁଲର ରଙ୍ଗରେ ।

ଏ ଖରାର ନିଦ ଠିକ୍ ନିଛାଟିଆ ଧାନବିଲ ଆଡ଼େ
କାଠକଟା ଚଢ଼େଇର ଡାକପରି ଅବୁଝ ଉଦାସ
ନିଛାଟିଆ ଢୋର ତଳେ କଇଁନାଡ ଦଳ ଆଉ ଫିକାନେଳି ଶିଉଳି ଭିତରେ
କଉମାଛ ନିଦପରି ଏ ଖରାର ନିଦ ଠିକ୍
ଏ ଗଳିର ଡସ୍‌ଟବିନ୍ କାନ୍ଥ ଓ କବାଟ ପାଖରେ
ନିଛାଟିଆ ଶିଥିଳ ଉଦାସ ।

ଆଜି ଯେବେ ଏ ଖରାର ସ୍ୱପ୍ନ ଆସେ ମୋ ମନରେ
ଏହି ଚୋରା ଦକ୍ଷିଣାରେ ଧାନକଟା ମହକ ଓ ନିଛାଟିଆ ବିଲ
ନିଛାଟିଆ ଚାଳତଳେ ଧାର ଧାର ପିମ୍ପୁଡି ଓ କଙ୍କିଡ଼େଣା ଅସରପା ଗୋଡ଼
କେତେ ଅପା, ନୂଆବୋଉ, କେତେ ଖୁଡ଼ୀ ବଡ଼ମାଆ
ହନୁମାନ ମୁଖା ଗାଆଁ ଆଖଡା ଘରର...

ମୋ ମନରେ ସ୍ୱପ୍ନ ଆସେ ଆଜି ଚୋରା ଦକ୍ଷିଣାରେ...
ମୋ ମନରେ ଘାରେ ଆଜି ପକ୍ଷାଘାତ ରୋଗପରି
ଏହି ଖରା ଦିପହର ଧୂସର ଓ ନିଷ୍ଠୁର ଧୂସର ।
ଧୂଳି ଓ କାଗଜ ଫୁଙ୍କି ବୁଲି ବୁଲି ଛୋଟ ଛୋଟ ଭଉଁରୀ ଭିତରେ
ଏ ଚୋରା ଦକ୍ଷିଣା ଆଜି ଝାଞ୍ଜି ହୁଏ-
ଏହି ତାତି ଆକାଶର ପିଚ୍ ସଡ଼କର...
ଆଜିର ଏ ରବିବାର ଦିପହର ନିଦ ଠେଲି ପଛରୁ ଏ ସ୍ୱପ୍ନ ଆସେ
ଗୋଡ଼ିବାଣ ଫୁଲର କଢର
ଆଜିର ଏ ସ୍ୱପ୍ନ ଆସେ ପାରି ହୋଇ କେତେ ବିଲ
କେବେ ବାଙ୍କ ବୁଲାଣି ଓ ପାରି ହୋଇ କେତେ ରେଳପୋଲ
ଡେଇଁ କେତେ ଅପନ୍ତରା ଶଗଡ଼ ଗୁଳାର ଧୂଳି ସ୍ମୃତି ଆସେ ସ୍ୱପ୍ନ ହୋଇ
ଦୂରାନ୍ତର, କେତେ ବ୍ୟର୍ଥ ଦୃଷ୍ଟିର ଦିଗନ୍ତ...

ଏ ଦୃଷ୍ଟିର ଦିଗନ୍ତରେ ଚରମ ଏ ପିପାସାର ଚରମ ବ୍ୟର୍ଥତା
ହୁଏତ ନିସ୍ତାର ଖୋଜେ ଦୂର ଗାଆଁ ଜୀବନର ଦାରିଦ୍ର୍ୟ ଅଭାବ ଆଉ
ସମୟର ନିରର୍ଥକ ସମବେଦନାରେ
ଆଜି ତେଣୁ ମୋ ମନରେ ଗୋଡ଼ିବାଣ ଫୁଲ ଫୁଟେ
ପତ୍ର ଝଡ଼େ ଅଶ୍ୱତ୍ଥର ଝଡ଼ାପତ୍ର ।

ଥୁଣ୍ଟା ଗଛ କୋରଡ଼ ଭିତରେ
ପବନ ଗୁମୁରି ଯାଏ
ସକାଳ ଓ ଦିପହର ତାରା ଓ ଅନ୍ଧାର ତଳେ
ନିଶବଦ ମଶାଣିର ଜୁଇଗାଡ଼ ମଶିଣା ଓ ଛିଣ୍ଡାକନା ଖପରା ଉପରେ ।



# ସନେଟ୍

## (ଏକ)

ଅସଂଖ୍ୟ ଦେହର ସ୍ୱପ୍ନ ଭାସି ବୁଲେ ଏ ରାତିର ସପନ ଭିତରେ
ତାରାରେ ତାରାରେ କ୍ଲାନ୍ତି ସୁପ୍ତି ଆଉ ଅନ୍ୟମନସ୍କତା
ଆଜି ତେଣୁ ଏ ବାଲିର ଅନୁର୍ବର ବିଜନ ଦେହରେ
ପବନ ଥରାଇଯାଏ ନଷ୍ଟ କେତେ ଦେହର କବିତା ।

ଆଖିର ପାଖୁଡ଼ା ତଳେ ହିମହେଲା ତିକ୍ତ କେତେ ରାତିର ଶିଶିର
ଫୁଟି କେତେ ଝଡ଼ିଗଲା କ୍ଲାନ୍ତ କେତେ ଓଠ ଉପକୂଳେ
କେତେ ରକ୍ତ ତଳେ ତଳେ ଜଳି ପୋଡ଼ି ନିଭିଗଲା ବସନ୍ତର ତାତି
କେତେ ଜହ୍ନ ମ୍ଳାନ ହେଲା କେତେ ଛିନ୍ନ ଅଳକ ଭିତରେ ।

ବିବର୍ଣ୍ଣ ଦେହର କେତେ ସ୍ୱପ୍ନ ମରେ ସମୟର ହାତ
ଆଜିଯାଏ କାଟି କାଟି କେତେ ଦେହ ଓଠର ଫସଲ
କେତେ ମାଂସ ଚମ ଗଲା ଝୁର ହୋଇ ମାଟିରେ ମାଟିରେ
ଏ ବାଲିରେ ମରିଗଲା କେତେ ରୂପ ଦେହର ଜଙ୍ଗଲ ।

ମୁଁ ଯଦି ତୁମକୁ ପାଏ ପାରିହୋଇ ମନ ଆଉ ଦେହ
ପାରି ହୋଇ ଯାନ୍ତି ଯେତେ ସମୟର ସୀମା ଓ ସନ୍ଦେହ ?



(ଦୁଇ)

ତୁମେ ଯଦି ବୁଝୁଥିବ ମୋ ମନର ଏ ସନ୍ଦେହ ଅନ୍ୟମନସ୍କତା
ଅଂଧାର ରାତିର ଯେତେ ବିସ୍ମୟ ଓ ଯେତେ ଅବିଶ୍ୱାସ...
ଆଷାଢ଼ର ମେଘ ଯଦି ଆସୁଥିବ ନଇଁ ଗାଢ଼ ହୋଇ
ଦେହର ପୃଥିବୀ ଘେରି ଘାରି ତୁମ ମନର ଆକାଶ...।

ତୁମେ ଯଦି ବୁଝୁଥିବ ଏ ବାଟର କ୍ଲାନ୍ତ ଇତିକଥା
ଯେତେ ଦିନ ହଜିଗଲା ଅସରନ୍ତି ଦୁଇ କରେ କରେ...
ଆଷାଢ଼ର ମେଘ ଯେବେ ଗାଢ଼ ହୋଇ ଆଜି ନଇଁ ଆସେ
ତୁମରି ବିଛଣା ପରେ ଅବା ଶୀର୍ଣ୍ଣ ତୁମର ଦେହରେ...।

ଆକସ୍ମିକ ଦେହ ମୋର ପୃଥିବୀର ଘଟଣାଜନିତ
ଆକସ୍ମିକ ଘଟଣାରୁ ଉପଜାତ ତୁମର ଏ ଦେହ
ଅସରନ୍ତି ଏ ବାଟରେ ତୁମେ ଓ ମୁଁ ସମୟର ହାତ
ମୋର ଭଲ ପାଇବାର ଯୁକ୍ତି ଆଉ ତୁମର ସନ୍ଦେହ...।

ମୁଁ ତୁମକୁ ଭଲପାଏ ଜନ୍ମ ମୃତ୍ୟୁ ସମୟର କ୍ଷୟ କ୍ଷତି ଯଦି
ତୁମକୁ ଫେରାଇ ଦିଏ ଡେଇଁ ମୋର ଏ ଦେହର ସୀମିତ ପରିଧି ।



(ତିନି)

ସମୟର ଢେଉ ଯେବେ ତୁମର ଏ ବେଣୀର ଢେଉରେ
ଦିନେ ଆସି ବୋଳି ଦେବ ଫେଣ ଆଉ କୁହୁଡ଼ି କାକର
ପୋଛି ଦେବ କପାଳରୁ ଜହ୍ନ ଆଉ ତାରାର ଆଲୁଅ
ଚିରଦିନ ମରିଯିବ ଫୁଲଗଛ ତୁମର ଦେହରେ ।

ସେଦିନ ଏ ପୃଥିବୀର ସୀମାନ୍ତରେ ଛିଡ଼ାହୋଇ ତୁମେ
ଦେଖିବ ଏ ଆକାଶରେ ଆଜିପରି ଚାଲିଯାଏ ମେଘ
ପତ୍ର ଯେତେ ଝଡିଯାଏ ଗୋଟି ଗୋଟି ଦିନ ଯେତେ ଯାଏ
ଆଜି ପରି ସେ ସବୁର କିଛି ହେଲେ ରହେ ନାହିଁ ଦାଗ ।

ସେଦନି ମୁଁ ଥିବି ଯଦି ଥିବ ମୋର ଆଶା ଓ ନିରାଶା
ଗଢ଼ିବାର ମୋହ ଥିବ ଭାଙ୍ଗିବାର ଥିବ ଅପଯଶ
ଦେହ ମୋର ଥିବ ଯଦି ସମୟର ନଈବଢ଼ି ପରେ
ମନର ଚେତନା ଥିବ ଥିବ ଏକ ସୀମିତ ଆକାଶ ।

ସେଦିନ ଏ ପୃଥିବୀର ଏ ସଂକୀର୍ଣ୍ଣ ପରିସର ବ୍ୟାପି
ମୁଁ ତୁମକୁ ଖୋଜିଯିବି ଆଜି ପରି ତଥାପି ତଥାପି ।

□□

## (ଚାରି)

ଯଦି ମୋର ଏ ମନର ରକ୍ତ ମାଂସ ଚମର ପୋଷାକ
ଆଜି ଭଲ ଲାଗେ ନାହିଁ, ଏ ନିସ୍ତେଜ ପୃଥିବୀର ଦେହ
ଆଜି ଯେବେ ଘୋଡ଼ିହୋଇ ଶୋଇପଡ଼େ ଫିକା ଜହ୍ନ ତାରାର ଆଲୁଅ
ଆଜି ଯଦି ଏକାକାର ସମୟର ଦେହ ଓ ଅଦେହ...।

ତୁମର ନିର୍ମୋକ ତେବେ ଖସିପଡୁ ବେଣୀ ଆଉ ଆଖିର ଭ୍ରୂଲତା
କଙ୍କାଳ ତୁମର ଆସୁ ଧଳାହୋଇ ସମୟ ଓ ଜହ୍ନ ଆଲୁଅରେ
ମୋ ଦେହର ସ୍ୱାସ୍ଥ୍ୟ ଆଉ ରକ୍ତମାଂସ ଚମର ପୋଷାକ
ଖସିପଡୁ ଉପେକ୍ଷିତ ବିସର୍ଜିତ ତୁମର ଦେହରେ ।

ପୃଥିବୀର ଏ ଦେହରେ ଖୋଜି ଖୋଜି ମୁଁ ତୁମର ମନର ସନ୍ଧାନ
ଆଜି ହୁଏ ଉପଗତ ଉପକୂଳେ ତୁମର ଦେହର
ମୁଁ ତେଣୁ ତୁମକୁ ଖୋଜେ ରକ୍ତେ ମୋର ଦେହର ସୀମାରେ
ତୁମର ଆତ୍ମା ବା କାହିଁ ଦେହ କାହିଁ ତୁମର ମନର ?

ମୁଁ ତୁମକୁ ଭଲପାଏ ପୁଞ୍ଜିଭୂତ ଏ ଦେହରେ ଆତ୍ମା ମୋର ମନର ପିପାସା
ମୁଁ ତେଣୁ ତୁମର ଦେହ ଖୋଜେ ମୋର ଏ ଦେହରେ ସବୁ ମୋର ଆଶା ।



## (ପାଞ୍ଚ)

ଆଷାଢ଼ର ଆକାଶରେ ମେଘ ନାହିଁ, ଘାସ ନାହିଁ ମାଟିର ଦେହରେ
ହସର କେଶର ଘେରି ନାହିଁ ଓଠ ଚମର ପାଖୁଡ଼ା
ଶାମୁକା ଭିତରେ ନାହିଁ ସ୍ୱପ୍ନ ଦୂର ନୀଳ ସାଗରର
ସମୟ ସୁଅରେ ନାହିଁ ଜୀବନର ଭଙ୍ଗା ଆଉ ଗଢ଼ା ।

ତୁମର ଦେହର ଏଇ ନିଛାଟିଆ ନଈବାଲି ପରେ
ପବନ ତ ଆସେ ନାହିଁ ଆଷାଢ଼ର ମେଘ ଅବା କାହିଁ ?
ମୋ ଦେହର କିଆରୀରେ ପୋଛିଦେଇ ଖରା ଆଉ ତାତି
ତୁମର ବଢ଼ିର ପାଣି ଆଳିଯାଏ ମାଡି ଆସି ନାହିଁ ।

ଆଷାଢ଼ର ଆକାଶରେ ମେଘ ଆସେ ବର୍ଷା ଯଦି ଆସେ
ପୃଥିବୀ ଦେହରେ ପୁଣି ଫେରି ଯଦି ଆସେ ଉର୍ବରତା
ମଣିଷର କିଆରୀରେ ଯଦି ପାଚେ ହସର ଫସଲ
ପୁଣି ଯଦି ଭଲ ଲାଗେ କ୍ଷୟକ୍ଷତି ସମୟର ବ୍ୟଥା...।

ପ୍ରାଚୀନ ଏ ପୃଥିବୀରେ ଜୀବନ୍ୟାସ ପାଏ ଯଦି ମଣିଷର ଦେହ
ତୁମେ ଯଦି ଭଲପାଅ ତୁମେ ଯଦି ଆଜି ଭଲପାଅ !!



(ଛଅ)

ପୃଥିବୀର ଦୟା କ୍ଷମା ସ୍ୱପ୍ନ ପୁଣି ଆଶା ଓ ବିସ୍ମୟ
ତା' ଭିତରେ ତୁମେ ଥିଲ ଫାଲ୍‌ଗୁନରେ ଥିଲା କୃଷ୍ଣଚୂଡ଼ା
ଶାନ୍ତି ଥିଲା ସୁଖ ଥିଲା ଦେହ ଆଉ ମନର ଶ୍ରାବଣ
ପୃଥିବୀର ଦେହ ଘେରି ଥିଲା ଦିନ ରାତିର ପାଖୁଡ଼ା ।

ଅସ୍ତଗାମୀ ତାରା ଆଉ ଅସ୍ତମିତ ବଉଦର ବାଟ
ମିଳାଇ ଯାଇଛି ମେଘ ଦୈନ୍ୟ ଆଉ ଶୂନ୍ୟତାର ଦେଶ
ଦିନର ଉତ୍ତାପ ପୁଣି ଉତ୍ତରାର ଶୀତ ଓ ଶୂନ୍ୟତା
ବିବର୍ଣ୍ଣ ପ୍ରକୃତି ପାଖେ ଜରାଜୀର୍ଣ୍ଣ ବିବର୍ଣ୍ଣ ପୁରୁଷ ।

ତୁମକୁ ମୁଁ ଖୋଜିଥିଲି ଦୟା କ୍ଷମା ଆଶା ଓ ସ୍ୱପ୍ନରେ
ସ୍ୱପ୍ନ କାହିଁ ? କ୍ଷମା କାହିଁ ? ସମୟର ବିବର୍ଣ୍ଣ ବିସ୍ମୃତି...
ରୂପ କାହିଁ ରେଖା କାହିଁ ଚରିତ୍ର ବା ଏ ମୋର ମନର ?
ତୁମର ଦେହରେ କାହିଁ ଯୁଗ ଯୁଗ ମଣିଷର ସ୍ମୃତି ?

ମୋର ଆଜି ମୃତ୍ୟୁ ହେଉ- ଜରାଜୀର୍ଣ୍ଣ ପୃଥିବୀର ଦେହ
ତୁମକୁ ମିଶାଇ ଦେବ ତୁମେ ଭଲପାଅ ବା ନ ପାଅ ।



## (ସାତ)

ହଳଦିଆ ପୃଷ୍ଠା ଯେତେ ସମୟର ଚିଠି ଆଉ ଖାତାର କାଗଜ
ମୁଁ ପଢ଼େ ଥରକୁ ଥର କେତେ ଲେଖା ଛପା କେତେ ଛୋଟ ଛୋଟ ଅସ୍ପଷ୍ଟ ଅକ୍ଷର
ଯମକ ଓ ଅନୁପ୍ରାସ ଅଳଙ୍କାର ହା ହୁତାଶ କେତେ
ବର୍ଣ୍ଣନା ଚାତୁରୀ ପୁଣି କେତେ ପ୍ରେମିକର ।

ସମୟର ଲେଖାସବୁ ପ୍ରତିଦିନ ପଢ଼ିହେବ ଯଦି
ମୋ ମନର ବ୍ୟାକରଣ ଅନୁପ୍ରାସ ତୁମର ଦେହର
ଯମକ ଓ ଯତିପାତ ଧ୍ୱନି ଆଉ ହା ହୁତାଶ ଯେତେ
ଲେଖିରଖେ  ସବୁ ଯଦି ହଳଦିଆ ପୃଷ୍ଠା ସମୟର... ।

ସମୟର ପୃଷ୍ଠା ଯେତେ ଗୋଟି ଗୋଟି ପଛକୁ ପଛକୁ
ମୁଁ ଚାଲିଛି ଓଲଟାଇ ଖୋଜି ଖୋଜି ତୁମର ଉପମା
କେଉଁ କବି ପ୍ରେମିକର ହା ହୁତାଶ ଆହତ ସ୍ୱପ୍ନରେ
ଆଣିଥିଲା ଅବସାଦ ସମୟର କ୍ଷୋଭ ଆଉ କ୍ଷମା ।

ଆକାଶର ଶୂନ୍ୟତାରେ ପୃଥିବୀର ଦୂରନ୍ତ ଏ ଗତି
ତୁମର ବା ଶେଷ କେବେ ଶେଷ ମୋର ସମୟ ଓ ସ୍ଥିତି ?



## (ଆଠ)

ଏ ରାତିର ଅରୁନ୍ଧତୀ ସପ୍ତରଷି ସ୍ୱାତି ଶତଭିଷା
ଏ ଆଖିରେ ସୀମାହୀନ ଯୁକ୍ତିହୀନ ନିରୁକ୍ତ ନୀଳିମା
ଏ ମନରେ ସ୍ମୃତିହୀନ ଶୁପ୍ତିହୀନ ଚେତନା ଓ କାମନାର ସୀମା -
ଆକସ୍ମିକ ଶାନ୍ତି ଯଦି ପାଏ ଆଶା ସକଳ ପିପାସା... ।

ଜୀର୍ଣ୍ଣ ପତ୍ର ଝଡ଼ିଯାଏ ନେପଥ୍ୟରେ ଅସ୍ପଷ୍ଟ ଅସ୍ଫୁଟ
ଏ ବର୍ଷର ଶେଷ ଯାତ୍ରା ମର୍ମରିତ ନିଶ୍ୱାସର ଢେଉ
ଅରୁନ୍ଧତୀ, ସପ୍ତରଷି ଚିରନ୍ତନ କ୍ଷୟମାନ ଆୟୁ-
କେନ୍ଦ୍ର ଯଦି ସ୍ଥିର ରହେ ସ୍ଥିର ରହେ ବାଟ ଓ ଅବାଟ ।

ଏ ରାତିର ଛାତି ତଳେ ଗଣିଚି ମୁଁ ସ୍ୱାତି ଶତଭିଷା
ଆଉ ଯେତେ ଚୋକଶୋଷ, ଯେତେ ମୋହ ଯେତେ କୋହ ଯେତେକ ଦ୍ୱିରୁକ୍ତି
ଯେତେ ଲୋଭ ଯେତେ କ୍ଷୋଭ ଯେତେ ପାପ ବସ୍ତୁ ଓ ବିକାର
ଭାଷାହୀନ ମୂହ୍ୟମାନ ଯେତେ ଆଶା ଯେତେ ବା ପିପାସା ।

ଖଣ୍ଡିତ ଆକାଶ କ୍ରମି ମରଣ ବା ଜୀବନର ମୁକ୍ତି
ମୁଁ କରିଛି ଅନ୍ୱେଷଣ ପାଇନାହିଁ ସନ୍ଧାନ କାହାର ।



(ନଅ)

ତୁମରି ଆଖିର ତାରା ହୁଏତ ବା ନିଶାନ୍ତର ନିସ୍ତେଜ ତାରାରେ
ରହିବ ବିବର୍ଣ୍ଣ ସ୍ମୃତି ଘୋଡ଼ିହୋଇ ମେଘ ଆଉ କୁହୁଡ଼ି ଓଢ଼ଣା
ତୁମର ଓଠର ଛିନ୍ନ ଫୁଲ କଢ଼ ପୃଥିବୀ ଦେହରେ
ହୁଏତ ରହିବ କେତେ ବସନ୍ତର ଫୁଲର ଝରଣା ।

ମୋ ମନର ଆକାଶରେ କେତେ ତାରା କେତେ ଝଡ଼ା ଫୁଲ
ମୋ ଦେହର ପୃଥିବୀରେ କେତେ ମୃତ୍ୟୁ କେତେ କ୍ଷୟ କ୍ଷତି
କେତେ ଆଶା କାମନା ଓ ଭୟ କେତେ ମେଘ ଆଉ ଖରା
ମୁମୂର୍ଷୁ ଦିନାନ୍ତ କେତେ, କେତେ ତିକ୍ତ ଦିଗନ୍ତର ସ୍ମୃତି ।

ତୁମର ଓଠର ରଙ୍ଗ ଫୁଲହୋଇ ଯଦି ଫେରେ ବସନ୍ତ ସହିତ
ବିବର୍ଣ୍ଣ ତାରାରୁ ଯଦି ତୁମ ଆଖି ଲୁହ ଫେରେ ଏହି ଘାସ କାକର ଟୋପାରେ
ଏ ମୋର ବିରହ ତେବେ କେତେ ଜୀର୍ଣ୍ଣ ଝଡ଼ାଫୁଲ ପରି
ଝଡୁଥିବ ଚିରଦିନ ମୋର ଚିଠି ପ୍ରେମଗପ ନାଟକ ଓ କବିତା ଲେଖାରେ ।

ତୁମର ଦେହରେ କିନ୍ତୁ ବିବର୍ଣ୍ଣ ବସନ୍ତ ଯାଏ ପତ୍ରଝଡ଼ା·ଦେଇ
ଆଉ ମୋର ଏ ଦେହରେ ତୁମର ଏ ବସନ୍ତର ରକ୍ତଚାପ କମିନାହିଁ ମୋଟେ
କମିନାହିଁ ।

□□

## (ଦଶ)

ମୁଁ ଯଦି ପଛକୁ କେବେ ଫେରିଚାହେଁ ମୋ ସତ୍ତାର ବ୍ୟଥା ଓ କ୍ଳାନ୍ତିରେ
ଏ ସନ୍ଧ୍ୟାର ଏ ଆକାଶ ଆରକ୍ତ ଦିଗନ୍ତ ପରେ ଧାଡ଼ି ଧାଡ଼ି ଏହି ଝାଉଁ ଗଛ
ଆଉ ଏହି ଗୋଧୂଳିର ବିବର୍ଣ୍ଣ ଶୂନ୍ୟତା ଧରି ତୁମର ଏ ଆଖିର ଆକାଶ
ମୋର ଯଦି ମନେ ପଡ଼େ ମୋ ମନର ଭ୍ରାନ୍ତି ଘେରି ତୁମର ଦେହର ଏହି
ଯେତେ ସତ ମିଛ...
କୃଷ୍ଣଚୂଡ଼ା ପାଖୁଡ଼ାରୁ ରଙ୍ଗ ନିଭିଗଲା ପରେ ଚିଠି ଆଉ କବିତା ସେପାଖେ
ସେଦିନ ମୋ ଦିନାନ୍ତର ଧୂସର ଆକାଶ ଆଉ ଶୁପ୍ତି ଭିତରକୁ
ମୁଁ ଯଦି ଅନାଇ ଦେଖି ହଠାତ୍ ଆଶ୍ଚର୍ଯ୍ୟ ହୁଏ କୃଷ୍ଣଚୂଡ଼ା ଫୁଲରେ କଢ଼ରେ
ତୁମର ଦ୍ୱିରୁକ୍ତି ଫେରେ ଆଧୁନିକ ଗୀତ ହୋଇ ଥିଏଟର ପାର୍କ ଭିତରକୁ -

ସେଦିନ ମୋ ନଷ୍ଟ ଲଗ୍ନ ଭିତରେ ହୁଏତ ଥିବ ଏ ପୃଥିବୀ ତଥାପି ସୁନ୍ଦର
କୃଷ୍ଣଚୂଡ଼ା ପାଖୁଡ଼ାରେ ହୁଏତ ବସନ୍ତ ଥିବ ତୁମର କବିତା ଆଉ ନାଚ ଗୀତ
ଆର୍ଟରେ କଳାରେ
ଯଦିଚ ବା ଏଠି ତାର ମୁଁ ଜାଣିଚି ମୃତ୍ୟୁ ଆସେ, କ୍ଷୟ ଆସେ, ରକ୍ତପାତ,
ରୋଗ ଆଉ ଶୋକ
ଯଦିଚ ବା ମୁଁ ଜାଣିଚି ଏଠି ଆସେ ଈର୍ଷା, ଘୃଣା, ସତୀତ୍ୱ ବି ନଷ୍ଟହୁଏ,
କ୍ଳାନ୍ତି ଆସେ ଭଲ ପାଇବାରେ ।
ସେଦିନ ମୋ ଦିନାନ୍ତର ସବୁ କ୍ଷୟ କ୍ଷତି ପରେ ସମୟର ମୁଠା ମୁଠା ଉଚ୍ଛିଷ୍ଟ
ଓ ସ୍ମୃତିର ସ୍ତୂପରେ
ତୁମେ ପୁଣି ଦେଖାଦେବ ମୋ ମୃତ୍ୟୁର ଭୟ ତଳେ ହ୍ୟାଣ୍ଡଲୁମ୍
ଶାଢ଼ୀରେ ବା ଅନ୍ୟ କେଉଁ ଆଖିର ତାରାରେ ?



# କାଳପୁରୁଷ

## (ଏକ)

ବର୍ଷାଋତୁ ନିଷ୍ଠୁର ନିର୍ମମ, ଫୁଟାଇ ରଙ୍ଗଣି ଫୁଲ ଖତକୁଡ଼
କାନ୍ଥ ବାଡ଼ ମୂଳେ, ହାଡ଼ରେ ଥରାଇ ରସ, ମାଟିତଳେ ଚେର ମୂଳ ଟାଣି
ବର୍ଷା ପଡ଼େ ବର୍ଷା ପଡ଼େ ଝରି, ଥରାଇ ମୁହୂର୍ତ୍ତ ଆତ୍ମା ଥୁଣ୍ଟା ଗଛ
ଶିଅ ମୂଳେ ମୂଳେ, ବର୍ଷା ପଡ଼େ ଝରି ଝରି ଅସରନ୍ତି ବର୍ଷା ପଡ଼େ ଝରି ।
ବୈଶାଖ ଓ ଜ୍ୟେଷ୍ଠ ଖରା, ଆକାଶର ଟିଣ ଛାତ ତଳେ
ମୂର୍ଚ୍ଛାରେ ଆହତ ଯେବେ ଥିଲା ସବୁ, ସବୁ ଥିଲା ଉତ୍ତେଜନା ହୀନ
ହାଡ଼ରେ ନ ଥିଲା ଚେଷ୍ଟା, ସ୍ନାୟୁ ଶିରା ପ୍ରଶିରା ଭିତରେ
ଆଶାର ନ ଥିଲା ଦ୍ୱନ୍ଦ୍ୱ ବିରକ୍ତି ବା କାହାର ଆସକ୍ତି,
କେତେବେଳେ ଘରପୋଡ଼ି, ଖଙ୍କାପେଟ କୁକୁର ଜିଭରେ
ଟୋପା ଟୋପା ନାଳ ତଳେ ଥିଲା ଯାହା ମୁମୂର୍ଷ ଜୀବନ ।୧୦।
ବେଶ୍ ଥିଲା ଠିକ୍ ଥିଲା ସବୁ ।

ସେ ଦିନ ଆସିଲା ବର୍ଷା ଛିନ୍ନଭିନ୍ନ ବିଶୃଙ୍ଖଳ ଅସଂଯତ ବଉଦର ସୁଅ
ପକେଟରେ ହାତ ରଖି ଚମତ୍କୃତ ବିସ୍ମିତି ମୁଁ ଛିଡ଼ାହୋଇ ମହାନଦୀ କୂଳେ
ଅବାକ୍ ମୁଁ ଲକ୍ଷ୍ୟ କଲି ଆଷାଢ଼ର ଅଶ୍ଳୀଳ ଉଦୟ
ସେଦିନ ବାହାରେ ବର୍ଷା ମେସ୍ ଘର ଉଷୁମ ଭିତରେ
ବ୍ରିଜ୍ ଖେଳ ଜମିଲା ସେ ଦିନ
ଟିକା, ରଙ୍ଗା, କଳାପାନ୍, ନାଲିପାନ୍, ଚାହା କପ୍, ସିଗାରେଟ୍ ଧରି
ସେ ଦିନ ଆସିଲା ଫିଟି ବେଣୀପରି ଭାରାକ୍ରାନ୍ତ ଆଷାଢ଼ ଶ୍ରାବଣ ।

ମନେ ପଡ଼େ ଦେଢ଼ବର୍ଷ ତଳେ
ଦେଢ଼ବର୍ଷ ତଳେ ଥରେ ପଡ଼ିଥିଲି ପ୍ରେମରେ ତୁମର ।୨୦।

କହୁଥିଲି କାନେ କାନେ ଝରିପଡୁ, ବର୍ଷା ପରି ସବୁ ଝରିପଡୁ
ତୁମର ବେଣୀରୁ ଫିଟି ଝରିପଡୁ ଆଷାଢ଼ ଶ୍ରାବଣ ।

ଏକିରେ ଅନ୍ଧାର ଉଠେ ଗିଳି ରେଖା ଆକାର ପ୍ରକାର
ସୀମିତ ମୋ ପୃଥିବୀର ଦିଗହଜେ, ହଜିଯାଏ ଉପର ଓ ତଳ
କ୍ଲାନ୍ତ ମୋର ଦେହ ଚାପି ମାଡି ଆସେ ବାଲିଚର ମାଡି ଆସେ ବାଲି ଓ ଅନ୍ଧାର ।
ପାଦ ଯେବେ ଛନ୍ଦିଦିଏ ଅନ୍ଧାରରେ ଗୁଡ଼କଙ୍କ ନଟା
ଦେହ ମୋର ଘେରି ରଖେ ସ୍ତୁପ ସ୍ତୁପ କୁଢ଼ କୁଢ଼ ବାଲି ଓ ଅଙ୍ଗାର
ନିରର୍ଥକ ଆତ୍ମହତ୍ୟା ନିରର୍ଥକ ଯେତେ ଅପବ୍ୟୟ
ବୋଧିଦ୍ରୁମ ତଳେ ଅବା ଫାସିଦିଆ ବରଗଛ ତଳେ
ଭୋକ ଶୋଷ କମି ନାହିଁ, ସରି ନାହିଁ, ଲୋପ ପାଇନାହିଁ ।୩୦ ।
ଭୋକ ମରି ଯାଇ ନାହିଁ ନିଛାଟିଆ କଟକ ଗଳିରେ,
ଆଜି ତେଣୁ ଗତିହୀନ ଛୋଟ ଏକ ବର୍ତ୍ତମାନ ଧରି
ଗଳି ପରେ ଗଳି ଡେଇଁ କୁଢ଼ କୁଢ଼ ବାଲି ଡେଇଁ ଡେଇଁ
ମୁଁ ଆଜି ଚାଲିଚି ଖୋଜି ତାରା ଆଉ ଜହ୍ନରାତି ଚୁପ୍ ଚୁପ୍ ପବନର କଥା
କୁଢ଼ କୁଢ଼ ଅଙ୍ଗାର ଓ ଅନ୍ଧାରର ସୁଡଙ୍ଗ ସେ ପାଖେ
ଆଇସ୍କ୍ରୀମ୍ ଲେମନେଡ୍ ଝରଣାର ନିରୁକ୍ତ ମମତା ।

ହେ ଅକ୍ରୁର, ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ରୁହ ରୁହ ଛିଡ଼ାହୁଅ ପିଠିରେ ମୋ ତୁମପରି ବୋଝ
ଅନ୍ଧାରରେ ପାଦ ଯେବେ ଛନ୍ଦିଦିଏ ଗୁଡ଼କଙ୍କ ନଟା
ଶୁଖେ ଛାତି ଭାଙ୍ଗେ ହାଡ଼ ବଢ଼ି ଉଠେ ବଢ଼ି ଉଠେ ଶୋଷ ।୪୦ ।

ମନେ ପଡ଼େ ଦେଢ଼ବର୍ଷ ତଳେ
ପ୍ରେମରେ ମୁଁ ପଡ଼ିଥିଲି ପଞ୍ଚମରେ ଶୁକ୍ର ଅବା ଶନି
ନବମରେ ବୃହସ୍ପତି କେଉଁ କ୍ଷେତ୍ରେ ରାହୁ ପୁଣି ଚନ୍ଦ୍ରର ଚଳନ ?
ଲଞ୍ଜୀ ତାରା ଯଦି ଆସେ
ଆକାଶରେ ଜହ୍ନଯାଏ ହଠାତ୍ ଲାଲ୍ ହୋଇ
ଖଡ଼ିରତ୍ନ କହିଥିଲେ ଜ୍ୟୋତିଷ ସ୍ୱେ ସପ୍ତ ପୁରୁଷର

ପଶ୍ଚିମରୁ ଯେ ଆସିବ ନାରୀ ଅବା ଅର୍ଦ୍ଧନାରୀ କିମ୍ବା ଖଞ୍ଜ ବିକୃତ ପୁରୁଷ
ବାମ ଅଙ୍ଗ ପଙ୍ଗୁ ତାର ବର୍ଣ୍ଣ ହେବ ଈଷତ୍ ପିଙ୍ଗଳ
ତା' ସହିତ ସହବାସ ଅବା ଉପବାସ
କଦାଚିତ୍ ନ କରିବ, ଚକ୍ଷୁହାନୀ, ଅଙ୍ଗହାନୀ, ହାନୀ ହେବ ଆୟୁଷ ତୁମର । ୫୦ ।

ପ୍ରେମରେ ମୁଁ ପଡ଼ିଥିଲି, ମ୍ଲାନ ଜହ୍ନ ବଉଦ ଭିତରେ
ଆଉ ନଈ ପଠା ଚୁମି ରୋମାଞ୍ଚିତ ଢେଉ
ସେ ଦିନ ରାତିରେ ଯେବେ ତୁମେ ମୁଁ ଫେରିଲୁ ଘରକୁ
ଅସ୍ତବ୍ୟସ୍ତ ସେ ବେଣୀରେ ପଡ଼ିଥିଲା ଶାନ୍ତ ହୋଇ ଢେଉ
ରାତିର କାକର ସବୁ ଥଣ୍ଡା ହୋଇ ଏକଜୁଟ ହୋଇ
ତୁମର ଆଖିର ତଳେ ବାନ୍ଧିଥିଲା ଜମାଟ ବରଫ
ମୁଁ କହିଲି ଭଲପାଅ, ଭଲପାଅ ସତେ ଭଲ ପାଅ
ମୁଁ ଶୁଣିଲି କାନରେ ମୋ ହାଡ଼ ଆଉ ମାଂସର ସ୍ପନ୍ଦନ
ମୁଁ ଦେଖିଲି ବାମ ଅଙ୍ଗ ପଙ୍ଗୁ ମୋର ବର୍ଣ୍ଣ ମୋର ଈଷତ୍ ପିଙ୍ଗଳ । । ୬୦ ।

ଏ ସହର ମୁହଁ ପରେ ବୋଳିବାଳି ପାଉଁଶ ଅଙ୍ଗାର
ରାତିର କୁହୁଡ଼ି ଚାଲେ ବାଟ ବାରି ଗଳି ଗଳି ସଡ଼କେ ସଡ଼କେ
ରାତିର ଅଫିମ ନିଶା ଢାକିଢୁକି ଯେବେ ଘୋଟି ଆସେ
ସଙ୍କୁଚିତ ଡେଣା କରି ଯେବେ ଆସେ ଓହ୍ଲାଇ ଆକାଶ,
ମୁଁ ଭାବିଲି ଏତେ ଲୋକ ଏତେ ମାଂସ ଏତେ ସ୍ୱାଦୁ କଳା କଳା ସାନ ବଡ଼
ଏତେ ହାତ ଗୋଡ଼ର ସମଷ୍ଟି
ଇତିହାସ କାଗଜରୁ ଅବା କାର ଖିଆଲ୍ ଭିତରୁ
ଏମାନେ ଆସିଲେ କାହୁଁ ଝରଣାର ପାଣି ଖୋଜି
ଏତେ ଭୂତ ଭବିଷ୍ୟତ ଗୋତ୍ରହୀନ ଗାତ୍ରହୀନ ଏ ଅଦ୍‌ଭୂତ ପଙ୍ଗପାଳ ଗୋଷ୍ଠୀ ।

ସଡ଼କ ଧୂଳିରେ ଛାଡି ଧଇଁମାରେ ଇଟାଚୂନ ଚଟାଣ ଉପରେ
ଆଖି ଯେତେ ମାଡ଼ ଗାଁଏ ରେଲ୍‌ଷ୍ଟେସନ୍ ଡାକଘର ଆଡ଼େ । ୭୦ ।
ତଣ୍ଟି ଯେବେ ଶୁଖିଯାଏ, ରିକ୍‌ସା ଗାଡ଼ି ଘୋଡ଼ାଗାଡ଼ି ଚଢ଼ି
ଆତ୍ମା ଯେତେ ଏ ସନ୍ଧ୍ୟାରେ ଯାଏ ଯାଏ ନଈକୂଳ ବୁଲି

ଏ ସବୁ ସତ ନା ମିଛ ବର୍ତ୍ତମାନ ଆଜି ଅବା କାଲି ?
ଏ ରାସ୍ତାରେ ବର୍ତ୍ତମାନ, ପୋଲ ତଳେ ଗଛମୂଳେ କେନାଲ୍ ପାଣିରେ
ଏତେ ମୁହଁ ଛାଇ ପଡ଼େ, ନାକ ନାହିଁ କାନ ନାହିଁ, ନାହିଁ କିଛି ମୁହଁର ଆକାର
ଥଣ୍ଡା ଆଖି ଡୋଳା ତଳେ ଖାଲି ବ୍ୟର୍ଥ ଅବ୍ୟକ୍ତ ବିଷାଦ
ଟାଇ କୋଟ୍ ପେଣ୍ଟ ଅବା ଗାନ୍ଧୀ ଟୋପି ସିଲ୍କ ଶାଢ଼ୀ ତଳେ
ଖାଲି ବ୍ୟର୍ଥ ବ୍ୟକ୍ତିହୀନ କୀଟ ଆଉ ପତଙ୍ଗ ଶବଦ ।

ସ୍ମାର୍ତ୍ତଦାସ ଇଞ୍ଜିନିୟର ଛିଡ଼ା ହୁଏ କାର୍ ରଖି ସାକାର ଓ ପୁଣି ନିରାକାର
ପ୍ରତିମା ନାୟକ ହସେ ତା' ଦେହରେ କଳା ଶାଢ଼ୀ ରୁଜ୍ ଆଉ ବ୍ରଣର ବିକାର ।୮୦ ।
ତା' ଓଠର ଲାଲ୍ ଛେପ ନମସ୍କାର ନମସ୍କାର ସାର୍
ସ୍ମାର୍ତ୍ତଦାସ ଛିଡ଼ା ହୁଏ ହଠାତ୍ ନିଜକୁ ଚିହ୍ନି ମିନତି ନାୟକ ଆସେ ମଲ୍ଲୀ
ଫୁଲ ଫୋପାଡ଼ି ଫୋପାଡ଼ି
ସହର ଉପରେ ଯାଏ ଭାସି ଭାସି ଅସରନ୍ତି ଧୂସର ବଉଦ
ଧୂସର ଏ ଆକାଶରେ ନେଶି ହୋଇ ରହିଯାଏ ପ୍ରତିମା, ମିନତି ମିରା
ରୁଜ୍, ବ୍ରଣ, ଚକୋଲେଟ୍, ଲାଲ୍ ଛେପ ରଖିଯାଏ ଦାଗ
ସ୍ମାର୍ତ୍ତଦାସ ଛିଡ଼ାହୁଏ କାର୍ ରଖି କାନ ଡେରି ଶୁଣେ
ସମୟର କ୍ଷୟକାଶ ଶ୍ରାବଣର ଝିପି ଝିପି ମର୍ମାନ୍ତିକ ଚେଷ୍ଟାର ଶବଦ ।

(ଦୁଇ)

ଏ ବର୍ଷାରେ ଆଶା ଅଛି, ଆଶୀର୍ବାଦ ଅଛି ସ୍ୱାସ୍ଥ୍ୟ ନିରୋଗ ବିଶ୍ରାମ
ନିଘୋଡ ଅନ୍ଧାର ତଳେ ଅଛି ବୁଢ଼ି ଅସୁରୁଣୀ ଭୂତକଥା ବାଘକଥା ଅଛି ବୁଢ଼ିମାଆ
ଏ ବର୍ଷାର ଦେହ ତଳେ ଅଛି ଅଛି ଧାନକ୍ଷେତ ଅଛି ଅଛି ଆମ୍ବ ତୋଟା ।୯୦ ।
ଦୂର ନଈ ଆର ପାରି ଗାଆଁ,

କାଗଜଫୁଲରେ ଛାଇ ଦେହ ଘଷି ଗାଢ଼ ହୁଏ...
(ଝରକା ସେ ପାଖେ)
ଆସୁଚି ବାହାରେ ବର୍ଷା ଡେଇଁ ଡେଇଁ ଛାତରୁ ଛାତକୁ

ଟେବୁଲ୍ ଉପରେ ଯେତେ ଛବି ବହି, ମ୍ୟାଗାଜିନ୍, ନାଲି ନେଳି ଟିଣ ଡିବା,
ଟିକ୍ ଟିକ୍ ବୋତଲ ଉପରେ
ନାଁ ଆଉ ଟ୍ରେଡ୍ ମାର୍କ ପଢ଼ି ହେଉ ନାହିଁ
ସେତେବେଳେ ସୁଇଚ୍ ଟିପି ସେ ଆସି ବସିଲା ଆସ୍ତେ ଟେବୁଲ୍‌ର
ଆରିଶି ସାମ୍ନାରେ ।
ତା ଦେହ ଉପରେ ସ୍ୱପ୍ନ କ୍ଳାନ୍ତି ପୁଣି ଆଲୁଅର ମ୍ଳାନ ଇନ୍ଦ୍ରଜାଲ
ଅସଂଯତ ବେଣୀ ମୂଳେ ହଳଦିଆ ରିବନ୍‌ରେ ତେଣୁ ଲଗେ ଶ୍ରାବଣ
ସନ୍ଧ୍ୟାରେ ।୧୦୦।
ଆର୍ଦ୍ର ଏକ ଶିହରଣ, ଆଉ ତାର ସ୍ତବ୍ଧ ଛାତି ତଳେ
ଶ୍ରାବଣ ଆକାଶ ନଏଁ ଭାରି ହୋଇ, ଆସେ ଆଶା ଆସେ ଅଭିସାର
ତା ଓଠର ଚାରିପାଖେ ସେଥିପାଇଁ ଖେଳି ବୁଲେ ବିରକ୍ତିର ଫିକାହସ
ଆଉ କ୍ଳାନ୍ତି
ଧାରା ଶ୍ରାବଣର ।
ବାହାରେ ଡାକିଲା ବର୍ଷା.....
କବାଟରେ ପବନ ବା ହାତ ମାରି ଠେଲି ଦେଇ ଗଲା
ରାସ୍ତାରେ ବା ଘୋଡ଼ା ଗାଡ଼ି ? ମଟର ହର୍ଣ୍ଣ ? ଜୋତା ମାଡ଼ି କିଏ ଆସି
ରାସ୍ତାରେ ବା
ଏଠି ଛିଡ଼ା ହେଲା ?
କିଏ ସେ ଡାକୁଚି ତଳେ ? କିଏ ସେ ବାହାରେ ? ।୧୧୦।
ଜୋତା ଶବ୍ଦ ପାହାଚ ଉପରେ,
ଆଜି ସନ୍ଧ୍ୟା ବର୍ଷା ଭାରି । ଭାରି ବର୍ଷା । ଆଉ ସବୁ ଭଲ ତ ତୁମର ।
ଭଲ ସବୁ । କଣ ଭଲ । ସବୁ ଭଲ କିଛି ନାହିଁ ଖରାପ ଖବର ।
ଆସ ଆଜି, ତମେ ଆସ, ମୁଁ ତୁମର ଅପେକ୍ଷାରେ, ଶ୍ରାବଣର ଛିନ୍ନଭିନ୍ନ
ଫୁଲ ଓ କବିତା
ମୁଁ ଯଦିବା ଏତେଦିନେ ତୁମକୁ ପାଇଚି ଖୋଜି ମୋ ଦେହରେ ଜଳିଯାଏ
ଆଜି କିନ୍ତୁ ଜୀବନର ଚିତା ।

ଚାଲ ଆଜି ତୁମେ ଚାଲ, ବାହାରେ ବର୍ଷାର ଡାକ ନୂଆ ଛବି ଆଜି ସିନେମାରେ
ବାହାରେ ମେଘର କ୍ଳାନ୍ତି ଫେରି ଆସ ମୋ ପାଖକୁ

ପାନଛେପ ଦାଗ ପୁଣି ରୁମାଲ୍‌ରେ ତୁମର ଶାଢ଼ୀରେ,
ତୁମେ ରୁହ ଛିଡ଼ା ହୁଅ ଆଲୁଅର କେନ୍ଦ୍ର ଖୋଜି
ତୁମେ ଆସି ଛିଡ଼ା ହୁଅ ହାତ ଟେକି ଠିକ୍ ମୋର ଛାତିର ସାମ୍ନାରେ ।୧୨୦।
ବାହାରେ କାହାର ଶବ୍ଦ ? ନୁହେଁ ନୁହେଁ କେହି ନୁହେଁ
ବର୍ଷା ଓ ମେଘର ଡାକ ଶବ୍ଦ ପବନର ।
ତୁମେ ଆସି ଛିଡ଼ା ହୁଅ କେନ୍ଦ୍ର ଖୋଜି ଆଲୁଅର
ମୁଁ ତୁମର ଦେହ ଆଡ଼େ ଖୋଜି ଯିବି, ଖୋଜି ଯିବି ସତ୍ତା ମୋର, ସ୍ଥିତି ମୋର,
ଭାର କେନ୍ଦ୍ର ମୋର ଏ ଦେହର ।
ପୁଣି କିଏ ? କାହିଁ କିଏ ?
ଭୁଲ ଭୁଲ ଭୁଲ ଖାଲି ବାହାରେ ତୋଫାନ ବର୍ଷା ଶବ୍ଦ ପବନର
ମୁଁ କିନ୍ତୁ ପାରୁଚି ଶୁଣି ଏହି ବର୍ଷା ଝଡ଼ ତଳେ ହାଡ଼ ଆଉ ମାଂସ ତଳେ
ଶବ୍ଦ ସମୟର ।
ଚୁପ୍ କିଆଁ ରହିଗଲ, କଥା କୁହ, ଆଜି ଭାରି ନିଛାଟିଆ ଡରମାଡ଼େ —
ଜଲ୍‌ଦି କଥା କୁହ ।
ମୁଁ ଶୁଣେ କାନରେ ମୋର, ଠିକ୍ ମୋର ପଛଆଡ଼େ
ପାଦ ଶବ୍ଦ ସମୟର, ଗୁପ୍‌ଚୁପ୍ କଥା ସମୟର । ।୧୩୦।
ଏ ବର୍ଷା ସନ୍ଧ୍ୟାରେ ଆଜି କିଛି ଭଲ ଲାଗେ ନାହିଁ, ଖରାପ ଲାଗେ ଭାରି ଖରାପ
ପ୍ରେମ ଫ୍ରେମ ବାଜେ ସବୁ ତୁମର ଏ ସିଲ୍‌କ କାମିଜ ତୁମର ଏ ଲକ୍‌ସ ସାବୁନ ହସ
କୁହ କୁହ କଥା କୁହ ,ଖରାପ ଲାଗେ ଭାରି ଖରାପ ଛବି ଫବି ବାଜେ ସବୁ
ରେଡ଼ିଓରେ ଖାଲି ବାଜେ ଗୀତ
କୁହ କୁହ କଥା କୁହ ଚୁପ୍ କିଆଁ ରହିଗଲ, କିଛି ଭଲ ଲାଗେ ନାହିଁ,
ମାର୍କସ୍, ଗାନ୍ଧୀ, ଜଗନ୍ନାଥ ଦାସ ।
ମୁଁ ଆଜି ପଡ଼ିବି ଡେଇଁ ବର୍ଷା ପାଣି ପବନକୁ, ମୁଁ ଯିବି ମୁକୁଳା କରି ବାଳ ମୋର
ବୁଲି ଚାରିଆଡ଼ ।
କୁହ କୁହ କଥା କୁହ ଚୁପ୍ କିଆଁ ରହିଗଲ ମୁଁ ଯିବି ମଟର ଚଢ଼ି ବାପଘର କିମ୍ବା
ଶାଶୁଘର ।
ମୁଁ କିନ୍ତୁ ପାରୁଚି ଦେଖି ତୁମର ଏ ପ୍ରେମ ତଳେ ଉତ୍ତେଜିତ ତୁମର ମୁହଁରେ
ନଖ ଚିହ୍ନ ସମୟର ଗୋଲ ଗୋଲ ଆଖିର କୋରଡ଼ ।
ମୁଁ ତାକୁ କହିଲି ସିଧା ମୁହେଁ ମୁହେଁ ଦେଖ୍ ଦେଖ୍ ତୁ ବୁଝି ପାରୁନୁ

ଜାଣୁଚୁ ଡେପୁଟି କାମ ଦିନ ଦିନ ମାସ ମାସ ରାସ୍ତା ରାସ୍ତା ପଦାରେ
ପଦାରେ ।୧୪୦।
ସେଥିରେ ତା ଗୋଡ଼ ଯଦି ଖସିଗଲା କେତେବେଳେ ବର୍ଷାପାଣି ପରିବା
ଚୋପାରେ
ତୁ ସିନା ରହିବୁ ଚୁପ୍, ମନେ ମନେ ସବୁ ରଖି, ତୁ ସିନା ରହିବୁ ଚୁପ୍
ଅନ୍ଧାରୁଆ ଗଳି ଆଡୁଆଳେ,
ତୁ ଯଦି ସେଥିରେ ଯାଉ ଯୁକ୍ତି କରି କଳି କରି, ସେ ଆସିଲା ମୋ ଘରକୁ
ତା ଘରକୁ
ସେ ଗଲା ସିଏଲ୍ ନେଇ କୋଉ ନର୍ସ ମାଷ୍ଟରାଣୀ ଆଡ଼େ -
ସେ ପୁଣି ତ ଜାଣି ନାହିଁ ପୁଅ ତୋର ନୁହେଁ ତାର, ସେ ପୁଣି ତ ଆସ୍ଥା ରଖେ
ତୋର ସଫା ଧଳା ସତୀତ୍ୱରେ ।

ସେ ଚାହିଁଲା ମୋ ଆଡ଼କୁ (ଏଃ : ଦାନ୍ତ ଯାକ ସବୁ ତାର ଆସିଲାଣି ତଳକୁ
ଓହଳି,
କିଏ ତାକୁ କିସ୍ ଦେବ ରମୁର ବା ଦୋଷ କଣ ?) ସେ କହିଲା ହସି ହସି
ଜାଣେ
ଜାଣେ ସବୁ ଜାଣେ
ନାଳକୂଳ, ନଇକୂଳ, ବି. ଏ. ଫେଲ୍ ହେଲାପରେ ତୋର ନୂଆ ଶାଢ଼ୀ ଜୋତା
ସବୁର ମୁଁ ଇତିହାସ ଜାଣେ । ।୧୫୦।
ସେଦିନ ଆସିଲା ବର୍ଷା ଛିନ୍ନ ଭିନ୍ନ ବିଶୃଙ୍ଖଳ ଅସଞ୍ଜାତ ବଉଦର ସୁଅ
ସଡ଼କର ବର୍ଷା ପାଣି ପଚାସଢ଼ା ପରିବା ଚୋପାରେ
ସେଦିନ ଫଟାଇ ମେଘ ରାତି ପ୍ରାୟ ସାଢ଼େ ଦଶ୍ ବେଳେ
ଉପରୁ ଓହ୍ଲାଇ ଆସି ଚେକାମାରି ବସିଗଲା ଅଳ୍ପ ଅଳ୍ପ ହସି ହସି
ଫିକା ନେଳି ଜହ୍ନର ଆଲୁଅ
(ଚାରିଆଡୁ ଲାଇଟ୍ ଯେତେ ଦୋକାନର ମୁନିସ୍‌ପାଲିଟିର)
ଘେରିଗଲେ ତାକୁ ଆସି ନାଲି ରଙ୍ଗ ସବୁ ମୁଠା ମୁଠା ଫୋପାଡ଼ି ଫୋପାଡ଼ି ।
ସେଦିନ ରମୁର ଯେତେ ଫାଜିଲାମି ଦୁଷ୍ଟାମି ଭିତରେ
ପ୍ରଥମ ଥର ମୁଁ ହଠାତ୍ ଲକ୍ଷ୍ୟ କଲି ତା ଆଖିର ଗୋଲ ଗୋଲ ନିଆଁ
ବିସ୍ମିତ ମୁଁ ଲକ୍ଷ୍ୟ କଲି ବର୍ଣ୍ଣ ତାର ଈଷତ୍ ପିଙ୍ଗଳ,

ତାପରେ ଲାଗିଲା ମତେ ମୋ ଦେହର ଚମଯାଏ ଧୀରେ ଧୀରେ
ତରଳି ତରଳି, ।୧୬୦।
ବ୍ଲାଉଜ୍‌ର ବୋତାମ ଦେଇ ଯାକିଯୁକି ଲୁଗା ମୋର ମୁହଁ ପୋତି
ତକିଆ ଭିତରେ
ଆଖିବୁଜି କରମାଡ଼ି ମୁଁ ପଡ଼ିଲି ଚୁପ୍‌ଚାପ୍ ଶୋଇ ।

ଖାକି ଶାର୍ଟ ପ୍ୟାଣ୍ଟ୍ ଟୋପି ନିଶ ପଣତର ଢେଉ
ତା ଭିତରେ ମିଶିଗଲା ଟାଇକୋଟ୍ ମଳିମୁଣ୍ଡ ଗାନ୍ଧି ଟୋପି ପଗଡ଼ିର ଭିଡ଼୍
ସିଲ୍‌କ ଶାଢ଼ୀ ଜୋତା ଛତା ଚୁଟି ଆଉ ବଟୁଆ ଗହଳ
ଧକ୍କାଧକ୍କି ଠେଲାଠେଲି ଅବାସ୍ତବ ଅତି ଅବାସ୍ତବ...
ଫିକା ଜହ୍ନ ଆଲୁଅରେ ସ୍ୱପ୍ନ ଦେଖେ ସ୍ୱପ୍ନ ଦେଖେ କଟକ ସହର
ମୁଁ ଶୁଣିଚି କେତେଥର ଛିଡ଼ାହୋଇ ବର୍ଷାପାଣି ପରିବା ଚୋପାରେ
ଛକ ଆଡୁ ରେଡ଼ିଓରେ ଏସ୍‌ରାଜ ଦିଲରୁବା ସ୍ୱର
ମୁଁ ଶୁଣିଛି ଛିଡ଼ାହୋଇ କେତେଥର ମଝି ସଡ଼କରେ ।୧୭୦।
ମୁଆଜ୍ଜିନ ଡାକ ଆଉ ରାମନାମ ଖାନନଗରର ।

ହେ ଅକ୍ରୁର ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ରୁହ ରୁହ ଛିଡ଼ା ରୁହ ପିଠିରେ ମୋ ତୁମପରି ବୋଝ
ମୁଁ ଯିବି ତୁମରି ପରି ତାରା ଖୋଜି ଜହ୍ନ ଖୋଜି, ଖୋଜି ଖୋଜି
ଝରଣାର ସୁଅ
ମୁଁ ଯିବି ତୁମରି ପରି ଖୋଜି ମୋର ପିତାମାତା ନିର୍ମୂଳି ନଟାରେ ଖୋଜି
ଅରୁନ୍ଧତୀ ତାରାର ଆଲୁଅ ।

## (ତିନି)

ରମୁର ମରିବା ଦିନ ମେଘ ହଠାତ୍ ଛାଡ଼ି ଯାଇଥିଲା
ଛକ କଟା ହେଲା ପରି ରମୁ ପାଇଁ ଖୋଲା ହେଲା ଗାଡ଼
କାଠ ଆସି ନଦା ହେଲା ତାପରେ ଠିକ୍ ଘଣ୍ଟାକ ଭିତରେ

ରମୁର କ୍ୟାଲିକୋ ଧୋତି ଜଳିଗଲା, ପୋଡ଼ିଗଲା ଫ୍ରେଞ୍ଚ୍‌କଟ୍ ନିଶ
ପଞ୍ଚପୁଷ୍ପ ଅମୃତରେ ଏକାଦଶ ଦିନ ଦିପହରେ ।୧୮୦।
ଅସ୍ଥି ତାର ଅଣାଯାଇ ପୋତା ହେଲା ପ୍ରେତ ପୁରୁଷରେ
ଖଡ଼ିରତ୍ନ ସଂସ୍କୃତରେ ଦେଲେ ପୁଣି ତାକୁ ଜୀବନ୍ୟାସ ।
ସେଦିନ ରମୁର ପୁଅ ସ୍କୁଲ ପିଲା ଦଶ ବରଷର
ଶ୍ଳୋକ ପଢ଼ି ଲୁହ ପୋଛି ନିଛାଟିଆ ମଶାଣି ଉପରେ
ରମୁକୁ ଫେରାଇ ଦେଲା ଆକାଶକୁ ପବନକୁ ନିଛାଟିଆ ନଈ ପନ୍ତାରକୁ ।
ତୁମେ ସବୁ ଯେତେ ଅଛ ରମୁର ଦୋସ୍ତ ଓ ୟାର
ପ୍ରଫେସର, ଇଞ୍ଜିନିୟର, ଡେପୁଟି ବା ପୁଲିସ୍ ଚାକିରିଆ
ତୁମେ ସବୁ ଯେତେ ଅଛ ସାନ ବଡ଼ ସରୁ ମୋଟା ଟୋକା ଆଉ ବୁଢ଼ା
ତୁମେ ସବୁ ଜାଣିଥିବ ରମୁ ଥିଲା ତୁମପରି ଛାଁଟ୍ କାଟ୍ ସିଧା ଓ ସଳଖ
ରମୁ ଥିଲା ତୁମପରି ମୁଲାଏମ୍ ଚିକ୍‌କଣ ଓ ଗୋଲ୍ ଗାଲ୍ ଲମ୍ବା ଓ
ଚଉଡ଼ା । ।୧୯୦।

## (ଚାରି)

ଗୀତ ମୋର ଭାସିଗଲା ସୁଏ ସୁଏ କେନାଲ ପାଣିରେ
ସିଗାରେଟ୍ ଖୋଳ ମୋର ଭାସିଗଲା ଥରି ଥରି
ସନ୍ଧ୍ୟା କ୍ରମେ ପାଣି ଫାଟି ମରିଗଲା ଅପନ୍ତରା ଆକାଶ ଭିତରେ
ମୁଁ ଶୁଣିଲି ପଛରେ ମୋ ଛିଡ଼ା ହେଲା କାର୍ ଆସି
ସାଧବ ଯୁବତୀମାନେ ଅତି ପ୍ରମୋଦରେ
କାର୍ ଚଢ଼ି ଚାଲିଗଲେ ଉଡ଼ିଗଲେ କାଉ ଓ ବାଦୁଡ଼ି
ନିଶବ୍ଦେ ପବନ ଗଲା ପତ୍ର ସବୁ ତୋଳି ତୋଳି
ଇଟାଭାଟି ଧୂଆଁ ଠେଲି କାଠଯୋଡ଼ୀ ଆଡ଼େ ।
ନିଶବଦ ଏ ମୁହୂର୍ତ୍ତ ସ୍ତବ୍ଧ ଏବେ ଗତିହୀନ ଘନୀଭୂତ ନିସ୍ପନ୍ଦ ନିଥର
ଯେତେବେଳେ କମିଯାଏ ରୋଗୀ ଘର ଭିତରେ ଆଲୁଅ ।୨୦୦।
ଯେତେବେଳେ ମରିଯାଏ କଳରୋଳ ଫୁଟବଲ୍ ପଡ଼ିଆ ଉପରେ
ଯେତେବେଳେ ହାତମାରି ଥୁଣ୍ଟାଗଛ ମୂଳେ ମୂଳେ ଶିଏ ଶିଏ କୋରଡ଼ ଭିତରେ

ଅଶାନ୍ତ ପ୍ରେତାତ୍ମା ଏହି ଅନ୍ଧାରରେ କାହାକୁ ବା ଖୋଜି ଖୋଜି ଯାଏ,
ସେତେବେଳେ ବୋଷ ବାବୁ ସହରର ବ୍ୟବସାୟୀ
କାର୍ ଚଢ଼ି ଚାଲିଗଲେ ପଛଆଡ଼େ ରଖିଦେଇ ଆମର ଏ ଏକତାଲା ଘର
ସେତେବେଳେ ଝରକାରେ ମୁଁ ରହିଲି ଖାଲି ଚାହିଁ
ବେଣୀରେ ନ ଥିଲା ଫୁଲ ବ୍ରେଷ୍ଟ ଟାଇଟ୍ ନ ଥିଲା ଛାତିରେ
ବାପା ଥିଲେ କଚେରୀରେ ବୋଉ ଗଲା ଧାର ମାଗି,
ତିନିଦିନ ପରେ ରଜ ଭାଇ ଥିଲେ ଡାକ୍ତରଖାନାରେ ।
ଅରଣ୍ୟର ଅଜଗର ମୁଁ ରହେ ଅଥର୍ବ ସ୍ଥିର ।୨୧୦।
ମୁଁ ସହେ କଷଣ ଲକ୍ଷ ଦେହ ଆଉ ମନ ଓ ଆତ୍ମାର
ମୋ ଦେହର ଗନ୍ଧ ପୁଣି ପୁଷ୍ପବତୀ ଗଣିକାର
ଚନ୍ଦ୍ରଭାନୁ ହୁଙ୍କାର ଓ ଇଷିକାର ଲାବଣ୍ୟବତୀର
ଗୋ ମାଂସର ଗନ୍ଧ ପୁଣି ମଦ ମସ୍ୟ ନାରୀ ଗନ୍ଧ
ମୋ ଦେହରେ ପୃଥିବୀର ଯାଯାବର ଆଲୋକ ଅନ୍ଧାର ।

ଜେଲ୍ ଖାନା ପାଚିରୀରେ ଆଉଜାଇ ପିଠି ମୋର ଚାପିରଖି ରୁମାଲ ଆଖିରେ
ମୁଁ କାନ୍ଦିଲି ଯେତେବେଳେ ପିତୃ ମାତୃ ବନ୍ଧୁହାନୀ ଆୟୁ କ୍ଷୟ ବଂଶ କ୍ଷୟ
ଦେଶବାସୀ କ୍ଷୟ ପୁଣି ଧନଜନ ଲକ୍ଷ୍ମୀ କ୍ଷୟ ଧର୍ମ ପୁଣି ଗୋବ୍ରାହ୍ମଣ କ୍ଷୟ
ମୁଁ କାନ୍ଦିଲି ଯେତେବେଳେ ସମୟର ଶବ୍ଦ ବାରି
ଜରା ମୃତ୍ୟୁ ବ୍ୟାଧି ପୁଣି ବ୍ୟାଧ ଆଉ ଘାତକର ଭୟ । ।୨୨୦।
ହେ ଅକ୍ରୂର ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର
ଗୁହ ଗୁହ ଛିଡ଼ା ଗୁହ ପିଠିରେ ମୋ ତୁମ ପରି ବୋଝ
ଆଜି ଯେବେ ରାଜ୍ୟ ଯାଏ ରାଜା ଯାଏ ଛାରଖାର ପ୍ରଜା ଓ ପାଟକ
ମୁଁ ତୁମର ଅନୁଗାମୀ ଆଦି ଅନ୍ତ କାହିଁ ବା ବାଟର ?

ସେଦିନ ଆସିଲା ବର୍ଷା ଘନ ଘୋର ଅସଞ୍ଜତ ବଉଦର ସୁଅ
ସେଦନ ଆକାଶ ଛାଡ଼ି ଅନ୍ଧାର ଆସିଲା ଖସି
ଲାଇଟ୍ ସବୁ ନିଭିଗଲା ଛିଣ୍ଡିଗଲା ଟେଲିଫୋନ୍ ତାର
ସେଦିନ ତୁମେ ଓ ମୁଁ ବାଟଭୁଲି ଯାଇଥିଲୁ
ପରିଚୟ ଭୁଲିଥିଲୁ ଦେହ ଓ ମନର
ସେଦିନ ରାତିରେ ତୁମେ ଚୁପ୍ ଚାପ୍ ଶୋଇଥିଲ ।୨୩୦।

ସେଦିନ ତୁମର ଥିଲି ମୁଁ ମୋର ସନ୍ତାପ ନେଇ
ତୁମେ ଆଜି ମୋର ନା କାହାର ?

ତୁମେ ଦିନେ ଶୁଣିଥିଲ ଓଙ୍କାର ବା ମାହେନ୍ଦ୍ର ବେଳାରେ
ତୁମେ ଦିନେ ଦେଖିଥିଲ ଗୁପ୍ତ ଗଙ୍ଗା ପଥର ଓ ବରଫ ସ୍ତୂପରେ
ଅବା ଭୁଲ ତୁମେ ମୁଁ ଶୁଣିଥିଲୁ ତାରାରେ ତାରାରେ
ରାତି ଓ ଦିନର ଶାନ୍ତ ଯାତାୟତ ସ୍ପନ୍ଦନ ବା ଅକ୍ଷତ ଯୋନୀର ।
ହେ ଅକ୍ରୁର ସଖା ମୋର ରୁହ ରୁହ ସମ୍ମୁଖେ ତୁମର
ଅନ୍ଧାର ଆସିଚି ଖସି ଆକାଶରୁ ଆବୋରି ପୃଥିବୀ
ପଛରେ ତୁମର ସ୍ତବ୍ଧ ବାଲି ଆଉ ବାଲି ପରେ ବାଲି
ନିଶ୍ଚଳ ବାଲିରେ ନଷ୍ଟ ଆଷାଢ଼ର ପ୍ରାଣାନ୍ତ ପ୍ରୟାସ । ।୨୪୦।

ମୁଁ ତୁମକୁ ଖୋଜିଥିଲି କେତେ ରେଲ ପୋଲ ଡେଇଁ
କେତେ ଯୁଗଯୁଗାନ୍ତର ସିଂହଳ ଓ ମଳୟ ଦ୍ୱୀପରେ
କେତେ ଗଳି କୋଠା ଡେଇଁ ବିବର୍ଣ୍ଣ ପଥର ସ୍ତୂପ ବାରବାଟି ପାଚିରୀ
ଭିତରେ
ଗଡ଼ଖାଇ ତଳେ କେତେ ସୁଡ଼ଙ୍ଗ ଓ ଅରମା ଭିତରେ
ତୁମକୁ ଖୋଜିଲି ପୁଣି ଚଉଦ୍ୱାର ବାଙ୍କି କଟକରେ ।

ଦେଶର ଜନତା ମୋର ମୋ ଦେଶର.....

ସଡ଼କର ବର୍ଷାପାଣି ପଚା ଏଡ଼ା ପରିବା ଚୋପାରେ
ମୁଁ ଆଜି ପାଏ ନା ଖୋଜି ପାଦଚିହ୍ନ ନିଶବଦ ପ୍ରାଚୀ ତୀରେ ତୀରେ
ମୁଁ ଆଜି ପାରେ ନା ଶୁଣି ପାଦଧ୍ୱନି ମଣିଷର
ନିଛାଟିଆ ବାଲିରେ ବାଲିରେ । ।୨୫୦।
ମୁଁ ଆଜି କେବଳ ଶୁଣେ ଛିଡ଼ା ହୋଇ ରାଣୀହାଟ ପଥର ପୋଲରେ
ଅସଂଖ୍ୟ ଛାୟାର ଏତେ ଯାତାୟତ ଆଷାଢ଼ର ପ୍ରାଣାନ୍ତ ପ୍ରୟାସ ।

ମୋ ଦେଶର ନିରନ୍ନ ଜନତା...

ସହର ଉପରେ ଯାଏ ଭାସି ଭାସି ଧୂସର ବଉଦ
ଛାତରୁ ଛାତକୁ ଡେଇଁ ବର୍ଷା ଯାଏ ପାରି ହୋଇ ଗଳି ଗଳି ମେନ୍ ରୋଡ୍ ସବୁ
ଉଦ୍ୟତ ଏ ଆଷାଢ଼ର ଧୂସର ସ୍ୱପ୍ନରେ
ପବନ କେବଳ ଯାଏ ନିଜ କଥା କହି କହି
କ୍ଳାନ୍ତି ଆଉ କ୍ଳାନ୍ତି ପୁଣି ଏ ଗ୍ରହର ସ୍ତୂପ ସ୍ତୂପ ଭଗ୍ନ ବିଗ୍ରହର ।

ଆଜି ଯଦି ପଦ୍ମ ଫୁଟେ ପୁଷ୍ପବତୀ ହୁଏ ଯଦି ନାରୀ
ରମୁ ପାଇଁ ରୁହେ ଖୋଲା ମଦଖଟି ଦେଶୀ ଓ ବିଲାତି । ୨୬୦ ।
ଆଜି ଯଦି ସନ୍ଧ୍ୟା ଫୁଟେ ନାଲି ଅବା ସଫେଦ ଗୋଲାପ,
ରମୁ ଦିନେ ଛାଡ଼ିଥିଲା ସ୍କୁଲ କଲେଜ ଦେଇଥିଲା ଚାକିରି ଇସ୍ତଫା
ରମୁ ଦିନେ ମିଲ ଛାଡ଼ି ପିନ୍ଧିଥିଲା ଖଦଡ଼ ଓ ଦେଇଥିଲା ସଭାରେ ବକ୍ତୃତା
ରମୁ ଦିନେ ଖୋଜୁଥିଲା ମୁକ୍ତି ପୁଣି ଦେହ ଆଉ ମନର ବିସ୍ମୃତି
ରମୁ ଦିନେ ଠିକ୍ ଥିଲା ତୁମ ପରି ଛାଁଟକାଟ୍ ସିଧା ଓ ସଳଖ ।

ଦେଶର ଜନତା ମୋର ମୋ ଦେଶର ନିରନ୍ନ ଜନତା...

## (ପାଞ୍ଚ)

ମଶାଲ ଆଲୁଅ ସବୁ ନିଭିଗଲା ଗୋଟି ଗୋଟି
ନାରିକେଳ, ତାଳବଣ, ତିବ୍ବତର ବରଫ ଉପରେ
ପ୍ରାଚୀ ନଦୀ କୂଳେ କୂଳେ ବାଲିଚର ମାଡ଼ିଗଲା ପରେ
ଆଳତି ଘଣ୍ଟାର ଧ୍ୱନି ଚୁପ୍ ହେଲା ଯେତେବେଳେ । ୨୭୦ ।
ଉଜ୍ଜୟିନୀ ଓଦନ୍ତପୁରୀରେ,
ତାଳପତ୍ର ପୋଥି ଆଉ ଶିଳାଲିପି ଭାରତର
ଚାରିଆଡ଼େ ପଢ଼ା ହେଲା ପରେ
ତୁମେ ମୁଁ ଆମେ ସବୁ ଆଜି କରୁ କାହାର ଅପେକ୍ଷା
ନିଛାଟିଆ ଆମର ଏ ଟେବୁଲ ବେଞ୍ଚ ଛୋଟ ଛୋଟ କୋଠରୀ ଭିତରେ ?
ଯେ ଯିବାର ଚାଲିଗଲା ପାଦଚିହ୍ନ ଖୋଜି ଖୋଜି ତାର
ତୁମେ ମୁଁ ଆମେ ସବୁ ସମୟର ଏତେ ନଈ ଏତେ ପୋଲ ପାରି ହୋଇ ଆସି
କାହାର ଅପେକ୍ଷା କରୁ ବାଲି ଆଉ ବିବର୍ଣ୍ଣ ଘାସରେ

କାହାର ଆହତ ଦେହ ରକ୍ତହୀନ ହୋଇ ଆସେ
କାହାର ବିବର୍ଣ୍ଣ ଦେହ କ୍ଷୟମାନ ବାଲି ଆଉ ବିବର୍ଣ୍ଣ ଘାସରେ । ୨୮୦।
ନିଶବ୍ଦ ଏ ବାଲିଚର ବାଲି ଆଉ ବାଲି
ବିବର୍ଣ୍ଣ ଘାସ ଓ ବାଲି ପଥହୀନ ବିବର୍ଣ୍ଣ ପୃଥିବୀ
ଉପରେ ନିସ୍ତେଜ ଖରା ପଥହୀନ ବିବର୍ଣ୍ଣ ଆକାଶ
ବିବର୍ଣ୍ଣ ବାଲି ଓ ଘାସ ଶେଷହୀନ ଶୋଷ ଆଉ ଶୋଷ
ନିସ୍ତେଜ ଧୂସର ସ୍ତବ୍ଧ ବାଲି ପୁଣି ବାଲି ଓ ଆକାଶ
ଯଦିବା ଚେତନା କେବେ ଫେରିଆସେ ଅକସ୍ମାତ ନିସ୍ତେଜ ଚେତନା
ଝିଙ୍କାରିର ଭୋକ ଅବା ପବନର କ୍ୱଚିତ୍ ଚେତନା
ଉଇହୁଙ୍କା ମୂଳେ ମୂଳେ ଥୁଣ୍ଟାଗଛ କୋରଡ଼ ଭିତରେ
ଯଦିବା ଚେତନା ଫେରେ, ଅସ୍ଥି ମାଂସ ଚମରେ ବା
ଗୁଡ଼କଙ୍କ ଘାସର ଚେତନା । ।୨୯୦।
ଯଦିବା ଚେତନା ଫେରେ
ବାଲି ଆଉ ବାଲି ପୁଣି ଘାସ
ଘାସର ବିଛଣା...
ଛୋଟ ଛୋଟ ଢେଉ ଆଉ
ସାନ ସାନ ମାଛର ଝରଣା
ଝରଣା
ଘାସ ଓ ଘାସ
ମେଘ ଓ ମୟୂର
ଝିଙ୍କାରୀର ଭୋକ ନୁହେଁ
ଶୋଷ ନୁହେଁ ହତାଶ ବାଲିର । ।୩୦୦।

ଚେତନା ଯଦି ବା ଫେରେ କାନନ ଓ ଉପବନ ପରେ
ଅସଂଯତ ନୀଳବେଣୀ ତ୍ରସ୍ତ ନୀଳ ଆଖିପତା ତଳେ
ଆଷାଢ଼ ବର୍ଷାର ମ୍ଳାନ ସ୍ୱପ୍ନ କେଉଁ ତାପସ କନ୍ୟାର
ଚେତନା ଯଦି ବା ଫେରେ କୁରୁବକ କଦମ୍ବରେ
ହୋମ ଅଗ୍ନି ପରେ
ସକାଳର ଆକାଶରେ ବୀଣା ଅବା ଧ୍ୱନିତ ଝଙ୍କାର
ଚେତନା ଯଦିବା ଫେରେ

ଯଦି ଫେରେ ମୁମୂର୍ଷୁ ଦେହରେ
ଥୁଣ୍ଟା ଗଛ ମୂଳେ ମୂଳେ କୋରଡ଼ ଭିତରେ । ୩୧୦।
ଝିଙ୍କାରିର ଶୋଷ ନୁହେଁ.....
ପାଣି ନୁହେଁ ମେଘ ନୁହେଁ ବାଲି ଆଉ
ଖାଲି ବାଲିଚର ।

କିଏ ତୁମ ପାଖେ ପାଖେ କିଏ ତୁମ ଆଗରେ ପଛରେ
ଚାଲୁ ଚାଲୁ ତୁମେ ଯଦି ଠିଆ ହୁଅ ହଠାତ୍ ବାଲିରେ
ମୁଁ ଗଣେ ତୁମେ ଓ ମୁଁ ଏକ ଦୁଇ ଆମେ ଦୁହେଁ
କିଏ ତୁମ ପାଖେ ପାଖେ ନିଛାଟିଆ ଏ ବାଲି ଭିତରେ ।
ନାହିଁ ଗୋତ୍ର ପରିଚୟ ନାହିଁ ଲେଖା ଆକାର ପ୍ରକାର
ନାରୀ ବା ପୁରୁଷ ଅବା ନପୁଂସକ ଅବା ବନ୍ଧ୍ୟା ପୃଥିବୀର ଶୋଷ
କାହାର ଆହତ ଦେହ ହତ ହୁଏ ଏ ବାଲିରେ । ୩୨୦।
କିଏ ତୁମ ପାଖେ ପାଖେ ପ୍ରେତାତ୍ମା ବା ମାଟିର ମଣିଷ ।

କାହାର ପାଦର ଶବ୍ଦ ନେପଥ୍ୟରେ ଦଳିତ ଓ ଆହତ ପୃଥିବୀ
ଭିକ୍ଷୁ ଓ ଶ୍ରମଣ ଅବା ମରହଟ୍ଟା ମୋଗଲ ପଠାଣ
କାହାର ରଥର ଚକ୍ର ସମବେତ ଅଶ୍ୱ ହସ୍ତୀ ଅବା ପଦାତିକ,
ସନ୍ଧ୍ୟାର ଶୋଣିତ ମକ୍ଷି ଆକାଶର ଦେହରେ ଦେହରେ
ହଠାତ୍ ବା ଫୁଟି ଉଠେ ଚକ୍ରଘଟ ତ୍ରିଶୂଳ ନିଶାଣ
ଅକସ୍ମାତ୍ ସ୍ତବ୍ଧ ହୁଏ ଅଭିଭୂତ ଅବାକ୍ ପୃଥିବୀ

ମଶାଲ ଆଲୁଅ ଗଲା ନିଭି ନିଭି ଆକାଶ ଉପରେ
ବାଲିପରେ ବାଲି ଡେଇଁ ଦେହ ପରେ କେତେ ଦେହ ଡେଇଁ
ମୁଁ ଆଜି ଅପେକ୍ଷା କରେ ସୂର୍ଯ୍ୟର ଉଦୟ ପୁଣି ବର୍ଷା ଆଉ ମେଘର ଉଦୟ । ୩୩୦।
ମୁଁ ଆଜି ତଥାପି ଖୋଜେ ଆଦି ଜନ୍ମସ୍ଥାନ ମୋର
ମୋର ଆଦି ପିତାମାତା ଅରୁନ୍ଧତୀ ତାରାର ଆଲୁଅ ।

ଏକ ଦେହେ ଜନ୍ମ ନେଲି ପୁରୁଷ ମୁଁ ସେହି ଦେହେ ନାରୀର ଶୃଙ୍ଗାର
ମୋ ପାଖେ ଏକାଠି ହେଲା ସିଲ୍‌କ ଶାଢ଼ୀ ପେଣ୍ଟ କୋଟ୍ ଧ୍ୱଜଭଙ୍ଗ

ପ୍ରସୂତି ଯନ୍ତ୍ରଣା ।

ମୁଁ କାନ୍ଦିଲି ଯେତେବେଳେ ଯାଜପୁର କଟକରେ, ରାଜାଙ୍କର ଇଳା ନାମେ
ଏକମାତ୍ର ପୁତ୍ର ଓ ଦୁହିତା.....
ଆହେ ରାଜା ପରୀକ୍ଷିତ ଦଂଶନେ ତୁମର
ଦେହାନ୍ତ ହେଲା ତ ରାଜା ପ୍ରାୟଶ୍ଚିତ ଗୋଟିଏ ପାପର
କିନ୍ତୁ ମୋର ସମ୍ମୁଖରେ ଏ ବିଚିତ୍ର ଏକ ପାଦ ବିଶିଷ୍ଟ ବୃଷଭ
ପୁଣି ଏକ ଭଦ୍ରଲୋକ ଧଳା ଧୋତି ପଞ୍ଜାବୀ ଓ
ଧଳା ଟୋପି ଧଳା କାର ବର୍ଣ୍ଣ ପୁଣି ଈଷତ୍ ପିଙ୍ଗଳ
ଯଷ୍ଟିର ଆଘାତ ଆଉ ବୃଷଭର ଆର୍ତ୍ତନାଦ.....
ଏ କାକ ତୀର୍ଥରେ ରାଜା ଶେଷ କ୍ରିୟା ସମାପ୍ତ ତୁମର ।

ହେ ଅକ୍ରୂର ସଖା ମୋର ପ୍ରିୟ ମୋର ପ୍ରାଣର ଦୋସର
ରୁହ ରୁହ ଛିଡ଼ା ରୁହ ତୁମେ ଖୋଜ କାହାର ଆଶ୍ରୟ
ସଂଘର ଆଶ୍ରୟ କାହିଁ, ଏ ବାଲିରେ ଭୋକ ଆଉ ଭୋକ
କିଏ ତୁମ ମାତା ପିତା ଏ କାହାର ଅସ୍ତ ବା ଉଦୟ ?

ରାମକୃଷ୍ଣ ମିଶନରୁ କେତେ ବାଟ ଏମାର ମଠକୁ ?

ମୁଁ କେତେ ଚାଲିଚି ବାଟ ଦିଗରୁ ଦିଗନ୍ତ କେତେ ନଷ୍ଟ କେତେ ତାରାର ସ୍ୱପ୍ନରେ
ମୋ କନ୍ୟାର ଦେଶ ଦୋହ୍ର, କନ୍ୟାଦ୍ରୋହ ମୋ ପିତାର
ଶତଶତ ଭ୍ରାତୃ ଦ୍ରୋହ ପରେ ।୩୫୦।
ମୁଁ ଆଜି ତଥାପି ଚାଲେ ପିତୃହନ୍ତା ଆତ୍ମା ମୋର
ରୋମ ଆଉ ବେବିଲୋନ୍ ମିଶରର ପ୍ରେତାତ୍ମା ସହିତ.....

ଅନ୍ଧାର ଯଦି ବା ଆସେ ଘେରି ରେଖା ଆକାର ପ୍ରକାର
ମାଂସ ଲୋଭୀ ଭଦ୍ରଲୋକ ଧଳା ଧୋତି ପଞ୍ଜାବୀ ଓ ଧଳା କାର୍..
ମୋ ଦେହରେ ଦାନ୍ତ, ନଖ, ଶତ ଶତ ଚଞ୍ଚୁର ଆଘାତ ।

ରାମକୃଷ୍ଣ ମିଶନରୁ କେତେ ବାଟ ଏମାର ମଠକୁ ?
ବର୍ଷା କେବେ ଆସିଥିଲା ତାମ୍ରଲିପ୍ତ ଚାରିତ୍ର ଓ ସିଂହଳ ଦ୍ୱୀପରେ

ବର୍ଷା କେବେ ଫେରୁଥିଲା ବାରୁଣାବନ୍ତରୁ ଦିନେ ନୂଆଦିଲ୍ଲୀ, କଲିକତା,
କଟକର ସଂକୀର୍ଣ୍ଣ ବାଟରେ...
ଆଜି ତେଣୁ କ୍ଳାନ୍ତି ଯେତେ ଶୂନ୍ୟତା ଓ କାଠଯୋଡ଼ୀ ବାଲିର ବ୍ୟର୍ଥତା
କାଗଜର ବିବରଣୀ, ଶୋକସଭା ସଂକ୍ଷିପ୍ତ ଜୀବନୀ ।୩୬୦।
ସ୍ମୃତି ସଂଖ୍ୟା ସମାଜ ବା ସ୍କୁଲ କଲେଜ ପାର୍କ ଲାଇବ୍ରେରୀ...

ତା ଆଗରୁ ତୁମେ ଓ ମୁଁ ଏହି ଦୃଷ୍ଟି ସୀମିତ ବିବର୍ଣ୍ଣ
ଧୂସର ଆକାଶ ମନ୍ତି ସନ୍ଧ୍ୟା ଆସେ ଅବା ଆସେ ସାତ୍ତ୍ୱିକ ଶ୍ରାବଣ
ଆମର ଅପେକ୍ଷା ରହେ ପାର୍ଟି ଆଉ ନିର୍ବାଚନ
ଦୂଷିତ ଆତ୍ମାର ଖେଦ ଜୀବନର ଦୂଷିତ ଦୁଃସ୍ୱପ୍ନ ।

ଜୀବନର ଯେତେ ଗୀତ ଭାସିଯାଏ ବାଲିକୁଦ ଉପରେ ଉପରେ
ଦୀପ ଓ ମଶାଲ କେତେ, କେତେ ଯୁଦ୍ଧ ଧର୍ମଘଟ, ପ୍ରୟାଗ ଓ ରାମେଶ୍ୱର ପରେ
କେତେ ଯୁଗ ଜନ୍ମ କେତେ ଫୁଟ୍ ଲାଇଟ୍, ପଦକ ଓ ଏନ୍‌କୋର ପରେ
ପ୍ରାଚୀର ବିବର୍ଣ୍ଣ ବାଲି କୁଢ଼ କୁଢ଼ ଜମିଯାଏ ଭଗ୍ନ କେତେ ମୁଖଶାଳା
ଭଗ୍ନ କେତେ ବିଗ୍ରହର ସ୍ତୁପ....

ଏ ଗ୍ରହର ନଷ୍ଟ ଯାତ୍ରା ଆଜି ଯଦି ଅନ୍ଧାରରୁ....
ଏ ଗ୍ରହର ନଷ୍ଟ ଯାତ୍ରା ଆଜି ଯଦି ମରଣରୁ....
ଏ ଗ୍ରହର ନଷ୍ଟ ଯାତ୍ରା ଆଜି ଯଦି ଅସତରୁ....
ମୃତ୍ୟୁର୍ମାଂ
ଅସତୋ ମା
ତମସୋ ମା
ମୃତ୍ୟୁର୍ମାଂ... ମୃତ୍ୟୁର୍ମାଂ... ମୃତ୍ୟୁର୍ମାଂ
ଅମୃତଂ
ଗମୟ ।୩୭୯।



# ଅକ୍ରୂର ଉବାଚ

ସନ୍ଧ୍ୟା ଆସେ ଦୂରାଗତ କ୍ଳାନ୍ତ ବାଟୋଇର
ନିସ୍ତେଜ ଆଖିରେ ଆଣି ଅସରନ୍ତି ବାଟର ନିରାଶା ।
ସେଦିନ ଠିକ୍ କ୍ଳାନ୍ତ ତାର ଆଖିପତା ଘୋଡ଼ାଇ ସନ୍ଧ୍ୟାର
ଛାଇ ଆଉ ବିଷର୍ଣ୍ଣତା ଭାରି ହୋଇ ଆସୁଥିଲା -
ଧୂଳି ଆଉ ଖାଲ ଢିପ, ଦିନକର କ୍ଳାନ୍ତି ଆଉ ଖରା
ଠକ୍ ଠକ୍ ଘୋଡ଼ା ଟାପୁ, ଧୂଳି ଆଉ ଘୋଡ଼ାମୁହଁ ଲଗାମ୍‌ରେ ଫେଣ
ଆଉ ତାର ଥକା ଦେହ ଗଣ୍ଠି ଗଣ୍ଠି ହାଡ଼ ଓ ଚମରେ
ବାଟର ନିରାଶା ଆଉ ରକ୍ତମାଂସ ସ୍ନାୟୁର ବିରକ୍ତି ।

"ତୁମେ ମୋର ଏ ଦେହର ଚିରନ୍ତନ ଏ ଯାତ୍ରାର ଧୂସର କ୍ଳାନ୍ତିରୁ
ଆଜି କଣ ମୁକ୍ତି ଦେବ ସମୟ ଓ ସମୟର ସଂଗ୍ରାମ ଓ ରକ୍ତପାତ ଠାରୁ ?
ତୁମେ ଯଦି ମୁକ୍ତି ଦିଅ ମତେ ଆଜି ମୋ ଦେହର ପୁନର୍ବାର ଦ୍ୱିରୁକ୍ତି ଭିତରୁ
ସାରଥିର ସାର୍ଥକତା ହୁଏତ ଆଜିର ଏହି ଯାତ୍ରାରେ ମୋ ତୁମର ସହିତ
ହୁଏତ ବା ସାର୍ଥକ ତୁମର ହାତର ଶଙ୍ଖ ଚକ୍ର ଚିହ୍ନ ତଳେ,
କିନ୍ତୁ ମୋର ବହୁ ଜନ୍ମ ଜନ୍ମାନ୍ତର କାମ କ୍ରୋଧ ଲୋଭ ମୋହ ଜରାମୃତ୍ୟୁ ପରେ
ତୁମର ଏ ଆଶୀର୍ବାଦ ଅନ୍ୟ ଏକ ପିପାସା ଓ ଏ ଦେହର ଅନ୍ୟ ଉପାଦାନ
ତେଣୁ ମୋର ଭଗବାନ ଏହି ଯାତ୍ରା ଶୁଭ ହେଉ ତୁମର ଓ ମୋର
ପୃଥିବୀର ଏହି ଦେହ ଘୋଡ଼ାଇ ରଖିଚି ଯଦି ତୁମର କାରୁଣ୍ୟ ଆଉ ନିଷ୍ଠୁରତା
କ୍ଷମା ଆଉ ତୁମର ସଂହାର
ଏ ଯୁଗର ଏ ଗ୍ଳାନିରେ ତୁମର ଯଦିବା ଏଠି ସମ୍ଭାବନା
ତଥାପି ଏ ଯାତ୍ରା ମୋର ଶୁଭ ହେଉ ପୂର୍ଣ୍ଣ ହେଉ ତୁମର କ୍ଷମାରେ
ଦେହର ସୀମାନ୍ତ ଡେଇଁ, ପାରି ହୋଇ କାରୁଣ୍ୟ ଓ ତୁମର ସଂହାର -"
ସେଦିନ ସନ୍ଧ୍ୟାରେ ଯେବେ ତା ଦେହର କ୍ଳାନ୍ତି ପାଇଁ ମୁଠାରେ ଲଗାମ୍

ତାର ଆସୁଥିଲା ହୁଗୁଳି ହୁଗୁଳି
ଠକ୍ ଠକ୍ ଘୋଡ଼ା ଟାପୁ ପଥର ଓ ଖାଲ ଡେଇଁ ସେଦିନ କ୍ଳାନ୍ତିରେ
ତାର ଯେତେବେଳେ ଅସହ୍ୟ ନିଷ୍ଠୁର
ତା ଆତ୍ମାର ଅବସନ୍ନ ନିଶବ୍ଦ ବିଳାପ ପରି ସେଦିନ ଆକାଶ ତଳେ ସ୍ଥିର
ଯେବେ ହୋଇଗଲା

ଅକସ୍ମାତ୍ ନିଶବ୍ଦ ପବନ,
ଯେତେବେଳେ ରଥ ତାର ରାସ୍ତାର ହଠାତ୍ ମୋଡ଼ ବୁଲିଗଲା ପରେ
ସାମ୍ନାରେ ଯମୁନା ନଈ ସନ୍ଧ୍ୟାର ଆକାଶ ଧରି
ମାଳତି ନଟାର ପାର୍କ, ଆଉ ଗୋପ ବଜାରର ଲୋକ ଭିଡ଼ ଦୋକାନ ଆଲୁଅ ।

"ମୋ ଯାତ୍ରାର କ୍ଳାନ୍ତି କଣ ଶେଷ ଆଜି ଏହିଠାରେ !
ଯୁଗରୁ ଅନେକ ଯୁଗ ମୋ ପାଦର ଦରଜ ଓ ମୋ ଘୋଡ଼ା ଟାପୁର ଧୂଳି
ମୋ ଗାଡ଼ିର ଭଙ୍ଗା ଚକ, ମୋ ଆଖିର କ୍ଳାନ୍ତ ଦିଗ୍‌ବଳୟ
ମୋ ସତ୍ତାର ଭ୍ରାନ୍ତି କଣ ଶେଷ ଆଜି ଏହିଠାରେ
ମୋ ମାଂସର ଭୋକ ଶୋଷ ପାପ ପୁଣ୍ୟ
ମୋ ଆତ୍ମାର କାତରତା, ଭକ୍ତି ଆଉ ଅହଙ୍କାର, ଧର୍ମ ଆଉ ମୋକ୍ଷବାଦ
ଆଧାତ୍ମିକ ଚେଷ୍ଟାର ବିଳୟ !
ମହାପ୍ରଭୁ ମୁକ୍ତି ଦିଅ – ଏହି ଯାତ୍ରା ଶୁଭ ହେଉ ତୁମର ଦୟାରୁ
ଏହି ଯାତ୍ରା ଶେଷ ହେଉ ମୋର ଶେଷଯାତ୍ରା ଏ ଦେହରୁ
ତୁମର ସଂହାର ଡେଇଁ
ବହୁତ ବହୁତ କ୍ଳାନ୍ତି, ପୁନରୁକ୍ତି ଏ ଆତ୍ମାର
ଆଉ ତୁମ ଦୟା କ୍ଷମା କରୁଣାର ସମୁଦ୍ର କୂଳରୁ ।"



## ସିତୁଆ

### (ଏକ)

ଧାନସିଡ଼ି ନଈ ସିନା ଏଠି ନାହିଁ, ଏଠି ଶୀର୍ଣ୍ଣ ସିତୁଆ ନଈରେ
ରାତି ଭୋର ଅନ୍ଧାରରେ ତାରା ଭାସେ ବିବର୍ଣ୍ଣ ଶ୍ରୀହୀନ
ଏଠି ବାଲି ଅପନ୍ତରା ଡେଇଁ ଘାସ ଗୁଗୁଚିଆ ବଣ
ରାତିରେ ପବନ ଆସେ ଖୋଜି ଖୋଜି ଝରକାରେ ଆଖିପତା ଡିବିରି ଆଲୁଅ ।
ଏଠି ମୁଗ କୋଳଥର କିଆରୀରେ ଜହ୍ନ ଆସେ ନିଛାଟିଆ ଅତଡ଼ା ଉପରେ
ଏଠି ବି ଅନ୍ଧାର ଆସେ ଘାରି ହୋଇ କୁହୁଡ଼ିରେ
ଏଠି ବି ବାଦୁଡ଼ି ଡେଣା କାକର ଝଡ଼ାଇ ଯାଏ ତୋଟାରେ ନିଶୂନ
                    ରାତି ଚୁପ୍‌ଚାପ୍ ହେଲେ
ଏଠି ବି ଏ ମାଟି କେତେ ଭଲ ପାଏ ମଣିଷକୁ ଅଗଣିତ କାମନାର କେତେ
                    ଆଶା ନିରାଶା ଭିତରେ ।
ମୋ ଦେହର କାମ୍ୟ କେତେ ପ୍ରେୟ ମୋର ଏ ମନର ମୋ ଆତ୍ମାର
                    କେତେ ଯେ ପିପାସା
ଏହି ଘାସ କାକର ଓ ଏହି ଧାନ ମହକରେ, ଡାହୁକର ଏ ଡାକରେ ହୁଏତ
                    ବା ରହିଚି ନିହିତ
ତେଣୁ ଯେବେ ସନ୍ଧ୍ୟା ବେଳେ ଆଲୁଅ ନରମ ହୁଏ ଛାଇ କ୍ରମେ ଶୃଙ୍ଖଳା
                    ଛଣରେ
ମୋର କ୍ଳାନ୍ତ ସତ୍ତା ଘେରି ସମୟ ହଠାତ୍ ଆସେ ଅଜ୍ଞାତ ଏ ଅନ୍ଧାରର ପ୍ରଶ୍ନ
                    ଆଉ ବହୁତ ସନ୍ଦେହ ।

### (ଦୁଇ)

ଧାନସିଡ଼ି ନଈ ସିନା ଏଠି ନାହିଁ ଏଠି ଏହି ସିତୁଆର ଧାର
ତାରା କେତେ ଭାସେ ଆଉ ମେଘ ଭାସେ ମୋ ଆଖିର ଦିଗ୍‌ବଳୟ ଘେରି

ମୋର କ୍ଷୁଦ୍ର ଚେତନାର ଦିଗନ୍ତ ସେପାଖେ ଏହି ପୃଥିବୀର ଋତୁ ଚକ୍ର ଧରି
ଧାନର ମହକ ଯେବେ ଫେରିବ ବା କୁହୁଡ଼ିରେ ଠିକ୍ ଆଜି ପରି -
ସେଦିନ ଯଦି ମୁଁ ଫେରେ ଛୁଇଁ ଛୁଇଁ ଆମ୍ବଗଛ ବଉଳର କଷି ଆଉ କଢ଼
ସେଦିନ ମୋ ଫେରିବାର ସାର୍ଥକତା କେଉଁଠି ବା ? ନିଛାଟିଆ ଏ ନଈତୁଠରେ
ନିଛାଟିଆ ବାଲିଚର ବେଣା ଘାସ ଦେହରେ ବା ନିରର୍ଥକ ମୋର ଏହି
ଆତ୍ମାର ଅତୀତ ।
ସେଦିନ ମୁଁ ଯଦି ଫେରେ - ସାର୍ଥକତା କେଉଁଠି ବା
ଶାନ୍ତି କାହିଁ ମୋର ଏହି ଭଲ ପାଇବାରେ ?

ମୋର ଭଲ ପାଇବାରେ ଏ ବାଟର ବିଷର୍ଣ୍ଣତା ଆଉ ଏହି ପାଦଚିହ୍ନ ସବୁ
ଖାଲି ପାଦ ଚିହ୍ନ କେତେ ଯୋତା ଓ ଖଡ଼ମ୍ ଦାଗ ସାଇକଲ୍ ଚକ ଦାଗ କେତେ
ଛୋଟ, ଉଞ୍ଚ, ଗୋଲ୍ ଗାଲ୍ ମୋଟା ସୋଟା ଯେତେ ସବୁ
ଏ ବାଟରେ ଗଲେ ଭାରି ନିଶ ମୋଡ଼ି କ୍ୟାନଭିସ୍ ଯୋତା ଦାଗ ରଖି
ଟାଟା ଆଉ କଲିକତା ଗଡ଼କାତ ଚାକିରୀ - ତାପରେ....
ସ୍ମୃତିର କାରୁଣ୍ୟ ଭରା ଏ ବାଟର ବ୍ୟର୍ଥତା ଓ ନିରର୍ଥକ ନିଶବ୍ଦ ବେଦନା !

ଆଜି ଯେବେ ଛାଇ ଢମେ ସେ ପାରିର ଅତଡ଼ାରେ - ଏ ପାରିର ଧାନଗଛ
କଇଁ ପାଖୁଡ଼ାରେ
ଆଲୁଅ ନରମ ହୁଏ ହଳଦୀପାଣିରେ ଗୋଳି ଚରାର କଣ୍ଟା ଓ ଘାସ
ଶଙ୍ଖଚିଲ ଡେଣା
ଏହି ଛାଇ ଅନ୍ଧାରରୁ ସମୟର ସେପାଖରୁ ସେମାନେ ଆସିବେ କଣ ଫେରି
ଏହି ଧାନ ମହକରେ
ପରିତ୍ୟକ୍ତ ଯେତେ ଆଶା କାମନାର ପଛେ ପଛେ
ଏହି ଭଲ ପାଇବା ଓ ଏ ଗାଆଁର ନିଶବ୍ଦ ଦେହକୁ ?
ନିଶବ୍ଦ ଏ ବେଦନାର ସ୍ତିମିତ ଏ ଆଚ୍ଛନ୍ନତା...ସମୟର ସ୍ଥଗିତ ମୁହୂର୍ତ୍ତ
ଅତୀତର ସ୍ମୃତି ସବୁ ସେମାନେ ଏ ଦିନାନ୍ତର ସୀମାର ସେପାଖେ
ଆଜି କଣ ଛିଡ଼ାହୋଇ ଏ ପାଖର ଏହି ବାଲି, ସିତୁଆର ଶୀର୍ଣ୍ଣ ଏହି
ଦେହର ସୀମାରେ
ସେମାନେ ଶୁଣନ୍ତି କଣ ଜୀବନର ପ୍ରତିଧ୍ୱନି ?

ଏଠି ଏତେ ହାରଜିତ୍ କଚିରୀ ଓ ଟାଉଟରି, ହସ ଲୁହ ଈର୍ଷା ଭୟ
ଏହି ଭଲ ପାଇବାର କ୍ରମିକ ଏ କ୍ଷୟ ଆଉ ମୃତ୍ୟୁର ଏ ନିଶବ୍ଦ ସଞ୍ଚାର ?

ଗଡ଼ଜାତ କଲିକତା ଟାଟା ଆଉ ସରକାରୀ ଚାକିରୀ... ତା'ପରେ...
ଜୀବନର କ୍ଲାନ୍ତ ବାଟ ମାଇଲ୍ ମାଇଲ୍ କେତେ ଚଢ଼ାଣି ଉଠାଣି -
କୋଶ କୋଶ କେତେ ସ୍ନେହ କେତେ ରୋଷ ଅହଙ୍କାର
କେତେ ଭୟ ଆଶା ଓ ବ୍ୟର୍ଥତା
ପାରି ହୋଇ ସନ୍ଧ୍ୟାବେଳେ ସେମାନେ ଫେରିଲା ଦିନ
ମଶାଣିର ଏହି ନାଲି ପଳାଶ ଫୁଲରେ
ସେମାନେ ହଠାତ୍ କଣ ଦେଖି ନାଲି ପ୍ରଜାପତି ଅକସ୍ମାତ୍ ଛିଡ଼ାହୋଇ
କେତୋଟି ମୁହୂର୍ତ୍ତ
ଭାବିଥିଲେ ଫେରିବାକୁ ଏହି ଧାନ ମହକରେ ହଳଦିବସନ୍ତ ଆଉ
ସିଢୁଆର କୁହୁଡ଼ି ସହିତ ?

ଏହି ଭଲପାଇବାର ନିଃସଙ୍ଗ ବେଦନା ନଏଁ ଧଉଷର ଧୂସର ଦେହରେ
ଆଜି ଆମ୍ବ ବଉଳରେ ପବନ ଯଦିବା ଛୁଏଁ, ଦୂର ନଈ ଅତଡ଼ା ଉପରେ
ଝିଣ୍ଟିକା ଯଦିବା ଡାକେ ଆଉ କେଉଁ ଅଚିହ୍ନା ପକ୍ଷୀର
ନିଃସଙ୍ଗ ଡାକରେ ମିଶେ ପାଟି ଶୋକ ନ୍ୟାୟ ନିଶାପର
ଆଜି ଯେତେ ପଉଷର ନିସ୍ତବ୍ଧ ଦେହରେ ଯାଏ କ୍ଷୟ ହୋଇ ଏ ଗାଆଁର ଦେହ
ମୁଁ ଫେରି ପଛକୁ ଚାହେଁ
କେତେ ଖରା କାକର ଭିତରେ
କ୍ଷୟ ହୋଇ ଯାଇଥିବା କେତେ ଭଲ ପାଇବାର ହିସାବ ନିକାଶ କେତେ
ସତ୍ତା କେତେ ନିଶବ୍ଦ ସମୟ ।

(ତିନି)

ଧାନସିଢ଼ି ନଈ ସିନା ଏଠି ନାହିଁ... ଏଠି ଶୀର୍ଣ୍ଣ ସିଢୁଆର ସୁଅ
ଏଠି ଭୋର ପବନରେ ଝଡ଼ିଯାଏ ଜୀର୍ଣ୍ଣ ପତ୍ର କେତେ
ଧାନସିଢ଼ି ନଈପାଖେ କେଉଁ ଛାଇ ଗଛ ଆଢୁଆଳେ

ବିଦେଶୀ କବିର ଆତ୍ମା ଆଜି ପୁଣି ଫେରୁଥିବ ହୁଏତ ଏ ଧାନ ମହକରେ
ପରିତ୍ୟକ୍ତ କାମନାର ଦେହ ଖୋଜି... ଏହି ଭଲ ପାଇବାର ଦେହ ।

ଏହି ଭଲ ପାଇବାର ଦେହ ଧରି ଏ ପୃଥିବୀ ହୁଏତ ବା ଏତେ ରୂପବତୀ
ହଳଦୀ ଓ ଅଳତାର ଦାଗ ଗୋଳି ଆକାଶରେ ଫାଲ୍‌ଗୁନର ଦିନ ଯେବେ ଫେରେ
ପଡିଆର କୁହୁଡ଼ିରେ ଘୋଡ଼ିହୋଇ ଆମ୍ବ ତୋଟା ଚୁପ୍‌ଚାପ୍ ନିଛାଟିଆ ଜାମୁକୋଳି ବଣ
ଦିପହର ଖରା ପୁଣି ଜାଳିଦିଏ ଜ୍ୟେଷ୍ଠମାସ ବିଲ, ବାଟ, ନିଛାଟିଆ ଚରା
ସେତେବେଳେ ମଣିଷର ରକ୍ତରେ ଜୀବନ୍ତ ହୁଏ ହଠାତ୍ ଅତୀତ ତାର
ପୁଞ୍ଜିଭୂତ କାମନାର ଯୁଗ ଯୁଗ ସ୍ମୃତି କେତେ ଏ ଗାଆଁର ପୁରୁଷ ପୁରୁଷ
ମୁଁ ତେଣୁ ପଛକୁ ଯେବେ ଫେରି ଚାହେଁ ମୋ ସତ୍ତାର ବ୍ୟଥା ଓ କ୍ଳାନ୍ତିରେ
ମୋର ସବୁ କାମନାର ନୀରବ ପ୍ରେତାତ୍ମା ଯେବେ ପାଲଟେ ଏ ଧୂସର ପଡିଆ
ହୁଏତ ଏ ପୃଥିବୀକୁ ଭଲପାଏ ଦେହ ମୋର ସ୍ମୃତିର ଏ ବେଦନା ଭିତରେ
ତଥାପି ମୋ ଚାରିପାଖେ ସମୟର ହାହାକାର ମୃତ୍ୟୁର ଏ ଚରମ ଶୂନ୍ୟତା
ଶୂନ୍ୟ ଏହି ବେଦନାର ବିବର୍ଣ୍ଣ ଏ ଗୋଧୂଳିରେ, ଏ ପୃଥିବୀ ଏ ମ୍ଳାନ ଆକାଶ
ଆଉ ମୋର ସାମ୍ନାରେ ଏହି ବାଟ ଦି ପାଖର ଏହି ଧଳା କ୍ଷୀରକୋଳି ଫୁଲ
ସ୍ମୃତିର ବେଦନା ଅବା ଅତୀତର ଆତ୍ମାରେ ବା ରାତି ଆଉ ଆସନ୍ନ ମୃତ୍ୟୁରେ
ପାଏ ପୁଣି ଅର୍ଥନ୍ୟାସ ଆକାଶ ଓ ଏ ପୃଥିବୀ
ଏହି ମୋର ଦେହ ତଳେ ଏହି ଝଡ଼ା ପତ୍ର ଆଉ
ଏହି ବାଟ ଦି ପାଖର କଣ୍ଟା ଆଉ କ୍ଷୀରକୋଳି ଫୁଲ ।



# କେଉଁ ଘାସ ? କେଉଁ ବାଲିଚର ?

କେଉଁ ନଈ କେଉଁ ବଣ ? କେଉଁ ଦୂର ଦିଗନ୍ତର ଦେହ ?
କେଉଁ ନଈ ମୁହାଣର ଉଜାଣି ଲୁଆର ସୁଅ । କେଉଁ ଘାସ କେଉଁ ବାଲିଚର ?
କେଉଁ ରାତି ପହରର ଉଜାଣି ନିଦର ଢେଉ ? କେଉଁ ତାରା ରାତିର କାକର ?
ଫେରିଆସେ ଫେରିଆସେ ମୋ ମୃତ୍ୟୁର ଭୟ ଡେଇଁ
କେଉଁ ଦୂର ଦିଗନ୍ତର ଖରା ଆଉ କଇଁ ଫୁଲ ?
ଧଳା ଉଲ୍ ଦେହ ଆଉ ପଳାଶ କଢ଼ର କ୍ଷତ
କେଉଁ ଫିକା ଓଠ ତଳେ, ସମୁଦ୍ରର ଢେଉ ଆଉ
ଚମ୍ପାଫୁଲ ମହକରେ ବସନ୍ତର ବ୍ୟଥିତ ଆକାଶ ।

ଏହି ଭଲ ପାଇବାରେ ମୃତ୍ୟୁ ଯଦି ପୁଣି ଆସେ
ତେବେ ଏହି ପୃଥିବୀର ବିଷର୍ଣ୍ଣ ଏ ସୀମାନ୍ତରେ ମୋ ଆଖିର ତାରା
କକ୍ଷଚ୍ୟୁତ ହେଲାବେଳେ ହୁଏତ ବା ଶେଷ ତା'ର କାକର ଟୋପାରେ
ଭିଜାଇ ନିଶବ୍ଦେ ଦେବ ଉଜାଣି ନିଦର ଢେଉ
ଧଳା ଉଲ ଛାତି ଆଉ...

କେଉଁ ନଈ ? କେଉଁ ଫୁଲ ?
କେଉଁ ନଈ ମୁହାଣରେ ଉଜାଣି ଲୁହର ଢେଉ ?
କେଉଁ ନଷ୍ଟ ଦିଗନ୍ତର ବସନ୍ତ ଓ ବ୍ୟଥିତ ଆକାଶ ?



# ବାବା ପାଇଁ ଦୁଇଟି କବିତା

## (ଏକ)

ଏ ଶୀତର ଏ କୁହୁଡ଼ି ତୋର ବୂଢ଼ୀ ମାଆ ପରି
ତା' ଆଖିର ଫିକା ପେଢ଼, ତା' ମୁଣ୍ଡର ଧଳା ଝୋଟ ପରି
ଆଉ ତା'ର ଚାହାଣିର ଝାପ୍‌ସା ଆକାଶ ସବୁ
ମରିଥିବା ପୃଥିବୀର ସ୍ମୃତିର ଯନ୍ତ୍ରଣା ନେଇ
ପାହାଡ଼ରେ ଏ ଶୀତର ଛଉ ଛଉ ଧଳା ଦାଗ ପରି ।

ସେ ଆସେ ସେମିତି ଠିକ୍ ଧଳା ଶାଲ୍ ଘୋଡ଼ି ହୋଇ
ବାଡ଼ି ଧରି ନଇଁ ନଇଁ
ତା' ପଛରେ କେତେ ନଈ, କେତେ ଢେଉ, କେତେ ସୁଅ,
କେତେ ବାଟ ଅପନ୍ତରା ଶୋଷ ଆଉ କେତେ ଥକା ମୁହଁ
ତା' ଧଳା ଚାଦର ତଳେ ଶୁଖିଥିବା କ୍ଷୀର କେତେ
ଥଣ୍ଡା ହୋଇ ଯାଇଥିବା ଉଷୁମର କେତେ ନାହିଁ-
କେତେ ଯେ ସେ ଅଜସ୍ର ସମୟ ।

ତୋ ଆଖିର ଏହି ତାରା
ମୋ ଆଖି ତାରାରୁ ନିଏ ଛଡ଼େଇ ଖେଳଣା କେତେ
କେତେ ଭଙ୍ଗା କଣ୍ଢେଇର ହାତ ଗୋଡ଼ ଭଙ୍ଗାଚକ
କେତେ ସ୍ପ୍ରିଙ୍ଗ୍ ପେଁକାଳି, ପୁଣି କେତେ ରଙ୍ଗର ଆଲୁଅ...
ତୋ ବୂଢ଼ୀ ମାଆର ଆଖି ତରାରୁ ବି ଆଖି ମୋର
ଏମିତି ଛଡ଼େଇ ଦିନେ ଆଣିଥିଲା କେତେ ଗପ, କେତେ ଗୀତ

କେତେ ଯେ ଆକାଶ ଡେଇଁ କେତେ ଗୁଡ଼ି ବେଲୁନରେ
କେତେ ଲୁହ, କେତେ ଡର, କେତେ ବୂଢ଼ୀ ଅସୁରୁଣୀ ମୁହଁ ।

ମୋ ବୋଉର ଆଖି ପରି ତୋ ଆଖିର ଏ ଆକାଶ
ତୋ ଆଖିର କଳା ଡେଉ କଳାମେଘ ନେଳି ପ୍ରଜାପତି
ଖରା ମେଘ ବସନ୍ତର ମହୁ ସବୁ ପିଇ ପିଇ
ପାରି ହୋଇ ପାଠ ପଢ଼ା, ହକି ଆଉ ଫୁଟ୍‌ବଲ୍
ପ୍ରେମ ଆଉ ଚିଠି ଲେଖା, ରୋଗ ଆଉ ଦାରିଦ୍ର୍ୟର ସବୁ କ୍ଷୟ କ୍ଷତି
ତୋ ଆଖି ଆକାଶ ଯାଉ ମୋ ବୋଉ ଆକାଶ ପରି
ପାରି ହୋଇ ମହାକାଶ, ମହାକାଳ, ସେ ମୃତ୍ୟୁର ଦୁର୍ନିବାର ଗତି ।

ଏ ଶୀତର ଏ କୁହୁଡ଼ି ବାଡ଼ି ଧରି ନଇଁ ନଇଁ
ପାହାଡ଼ ଉଠାଣି ଚଢ଼େ
ତା' ଧଳା ଚାଦର ତଳେ କେତେ ଗଛ, କଣ୍ଟା କେତେ
କେତେ ବଣ ଜଙ୍ଗଲର ଫୁଲ
ଶିକାରୀ ବାଘର ନଖ, କାପ୍ତାର ଡେଣା କେତେ...
ତା' ଧଳା ଚାଦର ତଳେ ପାଚିଲା ଧାନର ବାସ୍ନା
ଝିଙ୍କାରିର ଝିଁ ଝିଁ
ବାଦୁଡ଼ି ଡେଣାର ଛାଇ
ଚିକ୍ ଚିକ୍ ତାରା କେତେ, ତା' ହାତର ଭାଙ୍ଗିଥିବା କାଚଗୁଣ୍ଡ ପରି ।

ଏ ଶୀତର ଏ କୁହୁଡ଼ି ପାହାଡ଼ ଉଠାଣି ଚଢ଼ି ଚାଲିଯିବ
ତୋ ଆଖିର ଆକାଶ ସେପାରି
ମୋ ଆଖିର ମେଘ ଡେଇଁ ତୋର ବୁଢ଼ୀ ମାଆ ଯାଏ ତୋ ଆଖି ତାରାରୁ ଖସି
ଆଦିଗନ୍ତ, ଆସମୁଦ୍ର ଆଜନ୍ମର ସମୟ ସେପାରି ।
ଏ ଶୀତର କୁହୁଡ଼ି, ମୋ ବୋଉ ତୋ ବୁଢ଼ୀ ମାଆ

ତୋ ବୁଢ଼ୀ ମାଆର ଚମ
ଧଳା ଶାଲ ଚାଦରର ଅସରନ୍ତି ଆକାଶ ଆକାଶ
ଆଜି ତେଣୁ ତୋ ଆଖିର ତାରାରେ ମୋ ମୃତ୍ୟୁ ହୁଏ
ମୋର ଜନ୍ମ ଜନ୍ମାନ୍ତର
ବହୁ ଲୟ ବିଲୟର ନଷ୍ଟ ଇତିହାସ ।



# ବାବା ପାଇଁ ଦୁଇଟି କବିତା

## (ଦୁଇ)

ଆଜିଠାରୁ ତା ବାଟରେ ଫୁଲ ପଡୁ, ଖଇ ପଡୁ
ଚନ୍ଦନ ଓ ଝୁଣାର ବାସ୍ନାରେ
ତା' ବାଟରେ ମୁହଁ ସବୁ ହୋଇ ଯାଉ ନିଶ୍ଚିହ୍ନ, ନୀରବ ।
ପଛରେ ତ ବାଟ ତାର କର୍ଦ୍ଦମାକ୍ତ ଆବର୍ଜନାମୟ
ତା ପାଦର ଚିହ୍ନ ସେଠି ନାହିଁ ମୋଟେ ଆଜି ଆଉ ନାହିଁ ।

ତା' ଯିବାର ମୁହୂର୍ତ୍ତରେ ବର୍ଷା ଆଉ ଅପରିଚ୍ଛନ୍ନତା
ଚୁପ୍ ଚାପ୍ ତା' ମୁହଁର ବିକୃତିର ନିଃସଙ୍ଗତା ନେଇ
ଆଖି ବୁଜି ତା' ଦୃଷ୍ଟିରେ ସେ ବା କ'ଣ ଦେଖୁଥିଲା ?
ଅସ୍ପଷ୍ଟ ନିଷ୍ପ୍ରଭ ବହୁ ମୁହଁର ବିକୃତି ଅବା
କ୍ଳାନ୍ତି କ୍ଳାନ୍ତି କ୍ଳାନ୍ତି ଖାଲି- ବିରକ୍ତି ବା ପରିସମାପ୍ତିର ?
ଅବା ମୋ ଜେଜେର ମୁହଁ କଳା କଳା ବାଙ୍କ ନିଶ
ଅତର ଓ ଗୁଣ୍ଡିପାନ, ବଙ୍କା ବାଡ଼ି ରୂପା ପାନ ଡିବାର ସଉକ ?

ଅବା ତା' ଦୃଷ୍ଟିରେ ଥିଲା ଦିଗନ୍ତ ଦିଗନ୍ତ ଖାଲି ?
ଅନନ୍ତ ଶୂନ୍ୟତା ଘେରି ହାହାକାର ?
ଅବା ମହା ସୁପ୍ତିର ନିସ୍ତାର ?
ତୋ ଆଖିର ଡୋଳା ତଳେ ତା' ମୁହଁର ଚମ ଆଉ ହାଡ଼
ତା' ହସର ପାନ ବୋଳ, ତା ବାଳର ଧଳା ଝୋଟ ସବୁ
କେବେହେଲେ ପାଇନାହିଁ ଜୀବନ୍ୟାସ ।
ତେଣୁ ତୋର ଅସ୍ପଷ୍ଟ ସ୍ମୃତିରେ
ସାମ୍ନାରେ ସମୟ କେବେ ବ୍ୟତିବ୍ୟସ୍ତ ହେବ ନାହିଁ ।

ରାତିର କାକର ଅବା ଜିଦ୍‌ଖୋର ତୋ ଲୁହ ଭିତରେ
ସେ ବୁଢ଼ୀର ଚମ ହାଡ଼ ଶୀତ ଆଉ କୁହୁଡ଼ି ସ୍ମୃତିରେ
କେବେ ତ ଫେରିବ ନାହିଁ ତୋ ଫେରିବା ବାଟର କ୍ଲାନ୍ତିରେ ।

ତା' ଆଖିର କୁହୁଡ଼ିର ତୃପ୍ତି ଆସୁ ତୋର ମନ ଘେରି
ତା' ହସର ସ୍ନେହ ଆଣୁ ତୋ ଦେହର ତାର ସବୁ ଆଶୀର୍ବାଦ ନେଇ
ସେ ଆଜି ଗଲାଣି ଫେରି କାଠଯୋଡ଼ି ବାଲି ଭିତରକୁ
ସେ ଆଜି ଗଲାଣି ଫେରି ସମୟକୁ ଏକ ମହା ପରିସମାପ୍ତିକୁ ।

ତା ବାଟରେ ଫୁଲ ପଡୁ ବର୍ଷା ହେଉ ଚନ୍ଦନ ଓ ଝୁଣା
ଅସ୍ପଷ୍ଟ ନିଷ୍ପ୍ରଭ ଯେତେ ମୁହଁ ସବୁ ବିରକ୍ତିର
ଲୋପ ପାଉ ଶୂନ୍ୟ ଆକାଶରେ
ଯାଯାବର ତା ଆତ୍ମାର ଗତି ହେଉ ତୋର ଗୀତ ପରି
ଅର୍ଥହୀନ ଉଲ୍ଲାସର ସାନ ସାନ ଅସରନ୍ତି ଢେଉ ।



# ମୃତ୍ୟୁ

(କବି ଗଙ୍ଗାଧର ମେହେରଙ୍କୁ)

"ମୁଁ ତ ଅମୃତ ସାଗର ବିନ୍ଦୁ
ନଭେ ଉଠିଥିଲି ତେଜି ସିନ୍ଧୁ ।
...
ପଥେ ଶୁଖି ଗଲେ ପାପତାପରେ,
ହୋଇ ଶିଶିର ଖସିବି ତା'ପରେ ।"

ମହାଶୟ !
କୌତୁହଳ ଠିକ୍ ନୁହେଁ...
ଏ ଦେହ ଓ ଦେହାନ୍ତର ସୀମା ଅବା
ଚେତନାର ପାଚିରି ସେପାଖେ
ଛୋଟ ସ୍କୁଲ ପିଲାପରି ଫାଟକ ସେପାଖେ ଡେଇଁ
ଦେଖିବାର କୌତୁହଳ ନୁହେଁ ।

ଯେଣୁ ମୁଁ ଜାଣିଚି ଠିକ୍ ଫେରିବାର ବାଟ ଏଠି ନାହିଁ
ଫେରିବାର ଏ ବାଟରେ ଅନ୍ଧାର କେବଳ ଫେରେ
ଯେହେତୁ ମୁଁ ଠିକ୍ ଜାଣେ ଫେରିବା ଏ ବାଟରେ ଛାଇ ଅବା
ସ୍ମୃତି ଫେରେ ନାହିଁ
ଯେହେତୁ ମୁଁ ଠିକ୍ ଜାଣେ ଛାଇର ଦେହାନ୍ତ ନାହିଁ
ସମୟର ଛାୟାପାତ ନାହିଁ ।

ମହାଶୟ
ସେ ମୃତ୍ୟୁରେ ଶୋଭା ପାଉଥିଲା ସେଦିନ ବର୍ଷାର
ଲୁହରେ ଶିଥିଳ ସିକ୍ତ ଶାଳବଣ
କାଉ ଓ କଜଳପାତି ପର ସବୁ ଆକାଶରୁ ତୁହା ତୁହା ଅସରା ଅସରା
ଆପଣଙ୍କ ଚାଳ ଘାରି

ବିଞ୍ଚି ହୋଇ ପଡୁଥିଲା ସେଦିନ ସନ୍ଧ୍ୟାରେ·
ଆପଣଙ୍କ ଦେହ ଆଉ ଦେହାନ୍ତର ସୀମାନ୍ତ ଉପରେ
ସେଦିନ ସୁନ୍ଦର ସେହି ଶାଳ ବଣ ଧାନ କ୍ଷେତ
ଆଷାଢ଼ର ସେ ପୃଥିବୀ
ଜୀବନରୁ ମୃତ୍ୟୁ ପାଇଁ ସମୟର ବିଦଗ୍ଧ ସଙ୍ଗୀତ ।

ସେ ମୃତ୍ୟୁର ଶୋଭାଠାରୁ ବହୁ ଦୂର
ଏ ପୃଥିବୀ ଧୂସର ପାଣ୍ଡୁର...
ଅକସ୍ମାତ୍ ଆକାଶର ମହା ଶୂନ୍ୟତାରେ
ପ୍ରାଚୀନ ସୂର୍ଯ୍ୟର ଘୂର୍ଣ୍ଣିବାତ୍ୟାରୁ ଏ ଛିଣ୍ଡି ଯିବା...
ତା ପରେ ଦଶାବତାର ନାଚର ରୋମାନ୍‌ସ ଧରି
ପାହାଡ଼ ଜଙ୍ଗଲ ମେଘ ଝରଣା ଓ ଏ ସହର
ପାଖୁଡ଼ା ପାଖୁଡ଼ା ଏହି ଝଡିଯିବା ଗୋଲାପ ଫୁଲର...
ବିଷର୍ଣ୍ଣ ସ୍ମୃତିର ମ୍ଳାନ ସ୍ୱପ୍ନ ନେଇ
ଆକାଶର ଦେହରେ ଦେହରେ
ଏହି ତାରା ଛାୟାପଥ ମ୍ୟାଜିକ୍ ଲିଭିଯାଇ
ଛାଇର ଦେହାନ୍ତ ପରେ ସମୟର ବାଟରେ ଫେରିବା...
କିନ୍ତୁ ମହାଶୟ
ଛାଇର ଦେହାନ୍ତ ନାହିଁ, ସମୟର ଛାୟାପାତ ନାହିଁ ।

ମହାଶୟ, ଆଜି ତେଣୁ ଏ ମୃତ୍ୟୁରେ କୌତୂହଳ ନାହିଁ
ଆଶା ନାହିଁ ଇପ୍‌ସା ନାହିଁ- ପୁଣି ଏଠି ଫେରି ଆସି
ଏ ରାସ୍ତାର ବାରଲାଇଟ୍ କାର୍ ବସ୍ ସ୍କୁଟର ଭିତରେ
ଝଡ଼ା ପତ୍ର ଗୀତ ହୋଇ ବହୁତ ଦେହର, ବହୁ ସ୍ପନ୍ଦନରେ
ମିଶିଯିବା ନାହିଁ ।
ଏ ମୃତ୍ୟୁ କେବଳ ଠିକ୍ ସହରର ସବୁ ଫ୍ୟୁଜ୍ ଅକସ୍ମାତ୍ ପୋଡ଼ିଗଲା ପରି
ଏ ମୃତ୍ୟୁ ବା କାହାପାଇଁ ଚାକିରିରୁ ଅକସ୍ମାତ୍ ଛୁଟି ନେଲା ପରି ।

ମହାଶୟ
ମୁଁ ଯଦି ପାରନ୍ତି ରଖି ଆପଣଙ୍କ 'ଅମୃତ' ଓ 'ଶିଶିର'ର ଆଶା ।

☐☐

# ବିଶନ ମହାନ୍ତି

ମହାପ୍ରଭୁ
ମୋର ଭଙ୍ଗା ମୃଦଙ୍ଗର ନଷ୍ଟଗର୍ଭ ନଷ୍ଟ ତାଳ ଲୟ
ଆପଣଙ୍କ ଅର୍ଦ୍ଧ ଦଗ୍ଧ ନଷ୍ଟ ଦାରୁ ନଷ୍ଟ ଦେହ ପରି
ଗଙ୍ଗାର ନିର୍ଜନ ରାତି ହାହାକାର ଶୂନ୍ୟତା ଭିତରେ
ପରିତ୍ୟକ୍ତ ଅସହାୟ ଝିଙ୍କାରି ଓ କାଶବଣ ଗଗନ ସହିତ ।

ଆପଣ ପାରିଲେ ନାହିଁ ନିଜକୁ ତ ରକ୍ଷାକରି ସେଦିନ ଯୁଦ୍ଧରେ
କେତେ ହତ୍ୟା, ରକ୍ତପାତ, ବିଧ୍ୱସ୍ତ ମନ୍ଦିର ଗ୍ରାମ, ବିକଳାଙ୍ଗ, ବିଧ୍ୱସ୍ତ ବିଗ୍ରହ
କଣ୍ଟା ଝାଡ଼ ଜଙ୍ଗଲରେ, ଗଡ଼ଖାଇ, ନଈ ପନ୍ତାରରେ
ଆପଣଙ୍କ ଦେହରକ୍ଷୀ ରାଜା ପ୍ରଜା ସୈନ୍ୟ ସେନାପତି
ସେମାନଙ୍କ ମୃର୍ଦ୍ଧାରର ସତ୍କାର ଓ ଶେଷକୃତ୍ୟ ପାଇଁ
ଆଜି କେହି ସାହା ନାହିଁ । ଆପଣଙ୍କ ଅର୍ଦ୍ଧଦଗ୍ଧ ନଷ୍ଟ ଦାରୁ ପରି
ସେମାନେ ବି ପରିତ୍ୟକ୍ତ ଅସହାୟ ଆପଣଙ୍କ ହତଶ୍ରୀ ରାଜ୍ୟରେ ।

ଆପଣ ଫେରିବେ କଣ ଶ୍ରୀକ୍ଷେତ୍ରକୁ ପୁଣି ଥରେ ?.... ଅନ୍ୟ ଦାରୁ
ଧୂପ ଝୁଣା ଚନ୍ଦନର ସୁଗନ୍ଧରେ ଅନ୍ୟ ରଙ୍ଗ ଅନ୍ୟ ଚିତ୍ରାଙ୍କନ ?
ଆପଣ ତ ଫେରିଥିଲେ ତ୍ରେତୟା ଓ ଦ୍ୱାପରରେ; ପୁଣି ଏକ ଅରଣ୍ୟ ରାଜ୍ୟରେ
ନିଦ୍ରିତା ରାଣୀର ଗର୍ଭ ଭିତରକୁ ଆଲୋକିତ ଶ୍ୱେତ ହସ୍ତୀ ହୋଇ ।
ଆଜିର ଏ ସୂଚୀଭେଦ୍ୟ ଅନ୍ଧାରର ଉଚ୍ଛିଷ୍ଟ ଭିତରେ
ଆପଣ ଫେରିବେ ପୁଣି ଅନ୍ୟ କେଉଁ ଆକାରରେ
ମୋର ଭଙ୍ଗା ମୃଦଙ୍ଗର ଅନ୍ଧାର ଗର୍ଭରୁ ?

ମହାପ୍ରଭୁ
ବହୁତ ଯୁଗର ବହୁ ବିଶ୍ୱାସର ମୃତ୍ୟୁ ପରେ ଆଜିର ମୃତ୍ୟୁରୁ
ଆପଣଙ୍କ ବିଶ୍ୱାସକୁ ଜୀବନ୍ୟାସ ଦେବାପାଇଁ
ମୋର ଅବା ଶକ୍ତି କାହିଁ ?
ଗଙ୍ଗାର ନିର୍ଜନ ରାତି ମଶାଣିର ଅନ୍ଧାରରେ କାଶବଣ ଝିଙ୍କାରୀ ଶବ୍ଦରେ
ଛାରଖାର ମୋ ରାଜ୍ୟର ଦୁର୍ଦ୍ଦିନର ଅନ୍ତ ଅବା କାହିଁ ?

ଆପଣ ଫେରିବେ କ'ଣ ପୁଣି ନୂଆ କଳେବର ଧରି .
ଆପଣଙ୍କ ରୂପ କଣ ଭୟଙ୍କର ଏ ନବ ଗୁଞ୍ଜର
ଉନ୍ମତ୍ତ ହାତୀର ଜଙ୍ଘ, ସିଂହ ଆଉ ମାର୍ଜାରର ଦେହ
କେଶର ବେଷ୍ଟିତ ମୁହଁ ଭୟଙ୍କର ମର୍କଟର
ସେ ଏଠୁ ବଢ଼ାଏ ଜଙ୍ଘ ଧୀରେ ଧୀରେ ଆଗକୁ ସାମ୍ନାକୁ ।

ଏ ଜନ୍ତୁର ଯାତ୍ରା ପ୍ରଭୁ ଭୟାବହ କେଉଁ ମୁକ୍ତି
ଭୟାବହ କେଉଁ ପାପ ମହାନିର୍ବାଣକୁ ?
ବିଶ୍ୱାବସୁ ଶବରର ଘଞ୍ଚ ବଣ ଅନ୍ଧାର ଗୁହାରୁ
ଏତେ ଯୁଗ ଏତେ କ୍ଳାନ୍ତି ପଥଶ୍ରମ ପରେ
ମହାପ୍ରଭୁ
ପୁଣି ଏ ପୁନରାବୃତ୍ତି ପୁରାଣର କେଉଁ ଅଧ୍ୟାୟର ?



# ସଞ୍ଜୟ ଓ ଧୃତରାଷ୍ଟ୍ର ସମ୍ବାଦ

"ମହାଶୟ
ଆପଣଙ୍କ ଶିକ୍ଷା ଅତି ଚମତ୍କାର
ଆପଣଙ୍କ ବକ୍ତୃତାର ଅକାଟ୍ୟ ଯୁକ୍ତିରେ
ମୋ ଦୃଷ୍ଟିରୁ ଧ୍ୱଂସ କରି ମୋହରୂପୀ ଅନ୍ଧାରର ଘୋର ପ୍ରହେଳିକା
ଆପଣ ଏ ଯେଉଁ ଶିକ୍ଷା ଦେଲେ ମତେ ମହା ଜ୍ଞାନାଲୋକ
ତାର ତୀବ୍ର ଦହନରେ ହାତମୁଠା ଟାଣ ମୋର ହୋଇ ଆସେ ବଜ୍ର ପରି
ମୋ ହୃଦୟ ଲୌହ ପିଣ୍ଡ ପରି
ମୋ ଧନୁର ତୀର ହୁଏ ତୀକ୍ଷ୍ଣରୁ ଆହୁରି ତୀକ୍ଷ୍ଣ,
ମହାଶୟ
ବର୍ତ୍ତମାନ ମୁଁ ବୁଝୁଛି, ବନ୍ଧୁ ଜ୍ଞାତି ନରହତ୍ୟା ଧର୍ମ କ୍ଷତ୍ରିୟର
ଅନନ୍ତ ମୁକ୍ତିର ଦ୍ୱାର ଭେଦ କରି ଯିବା ପାଇଁ
ଏ ତ ମହା ଯୋଗର ସାଧନା ।

ଯେହେତୁ ଆପଣ ମତେ ଶିକ୍ଷା ଦେଲେ
ମୋ ତୀରର ତୀକ୍ଷ୍ଣ ମୁନ ଭିତରେ ଆପଣ
ମୋ ଧନୁର ହୁଁକାରରେ ଆପଣଙ୍କ ଶଙ୍ଖ ଧ୍ୱନି
ଆପଣ ହିଁ ବିକଳାଙ୍ଗ ଆହତ ସୈନିକ
ମୋ ନିର୍ଦ୍ଦୟ ଅସୀଘାତ ଖୁଣ ଓ ରକ୍ତରେ
ଆପଣ କରିବେ ହତ୍ୟା ଆପଣଙ୍କୁ ।
କିନ୍ତୁ ଆପଣଙ୍କୁ
ଶସ୍ତ୍ର ଛିନ୍ନ କରେ ନାହିଁ
ଅଗ୍ନୀ କେବେ ଭସ୍ମ କରେ ନାହିଁ
ତେଣୁ ତ ଆସନ୍ନ ଏହି ଭୟାବହ ରକ୍ତପାତ ଅସୀଘାତ ଜନିତ ଯନ୍ତ୍ରଣା

ମିଥ୍ୟା, ମାୟା, ମୋହ, ପ୍ରହେଳିକା
ସତ୍ୟ ସତ୍ୟ ଏକମାତ୍ର ସତ୍ୟ ହିଁ ଆପଣ
ମୋ ଘୋଡ଼ାର ହ୍ରେଷାରବ, ବିଧବାର କୋହ ଯନ୍ତ୍ରଣାରେ
ଅସହାୟ ଶିଶୁର କାନ୍ଦଣା ଅବା କବନ୍ଧ ନାଚରେ
ସତ୍ୟ ସତ୍ୟ ଏକ ମାତ୍ର ସତ୍ୟ ହିଁ ଆପଣ
ବନ୍ଧୁ ଜ୍ଞାତି ସହୋଦର, ମାତୁଳ, ପିତୃବ୍ୟ
ସମସ୍ତେ ଆପଣ ପୁଣି, ସମସ୍ତଙ୍କ ହତ୍ୟାରେ ଆପଣ ।"

ମହାରାଜ
ଅର୍ଜ୍ଜୁନର ଏ ଉକ୍ତିରେ ଭଗବାନ କୃଷ୍ଣ ବାସୁଦେବ
ନିତ୍ୟାନ୍ତ ବିରକ୍ତ ହୋଇ ରଥ ଧୀରେ ମୁହାଁଇଲେ
କୁରୁ ସୈନ୍ୟ ବ୍ୟୁହ ଆଡ଼େ
ଅର୍ଜ୍ଜୁନ ମୁହଁରେ ହସ, ଚକ୍ଷୁ ତାର ଜ୍ୱଳନ୍ତ ଓ କୃତାନ୍ତ ନିଷ୍ଠୁର ।

କିନ୍ତୁ ମହାରାଜ
ଏହି ଯୁଦ୍ଧ ବିଗ୍ରହର ଆରମ୍ଭରେ
କୃଷ୍ଣଙ୍କର ବକ୍ତୃତା ଓ ଉଦ୍‌ବୋଧନ, ପେପ୍‌ଟକ୍ ସତ୍ତ୍ୱେ
ସମାପ୍ତିର ସୂଚନା ତ ମୋ ଦୃଷ୍ଟିରେ ଦିଶେ ନାହିଁ....
ଆପଣଙ୍କ ଦୃଷ୍ଟିହୀନ ପରିବ୍ୟାପ୍ତ ଅନ୍ଧକାର ତଳେ,
ବୀର ଗାଥା ବୀର ଧର୍ମ ଜାଣିବାକୁ ଏ ଆଗ୍ରହ,
ଅତି ସ୍ୱାଭାବିକ ।

କିନ୍ତୁ ମହାରାଜ
ଦୂର ଦୂର ପ୍ରସାରିତ ମୋ ଦୃଷ୍ଟିର ଅନ୍ତହୀନ ଏହି ଦିଗ୍‌ବଳୟ
ବେଷ୍ଟିତ ଯନ୍ତ୍ରଣା କ୍ଷତ ଆହତ ଏ ରକ୍ତାକ୍ତ ପୃଥିବୀ
ବହୁ ଭୟ, ବହୁ କ୍ଷୟ ବିପ୍ଳବ ଓ ରକ୍ତପାତ ଡେଇଁ
ବହୁ ଶ୍ରମ, ବହୁ ଚେଷ୍ଟା, ବହୁ ଯୁଗ ଘାତ ପ୍ରତିଘାତ
ଶେଷରେ ବି ସେହି ଭୟ ସେହି ହତ୍ୟା ମଣିଷର ରକ୍ତାକ୍ତ ଯନ୍ତ୍ରଣା...
ଏମାନେ ସମସ୍ତେ

ରାଜା ପ୍ରଜା ସେନାପତି ସୈନ୍ୟ ଓ ସାମନ୍ତ
ବାରମ୍ବାର ଫେରୁଥିବେ ପୃଥିବୀକୁ
ଧର୍ମ ଜାତି ଦେଶ ଆଉ ଆଦର୍ଶ ଯୁକ୍ତିରେ
ବାରମ୍ବାର ପିତା ପୁତ୍ର ପିତୃବ୍ୟ ହତ୍ୟାରେ
ଜର୍ଜରିତ କୁରୁକ୍ଷେତ୍ର ଫେରୁଥିବ ପୃଥିବୀକୁ
ଅନ୍ତହୀନ ସମୟର ରୋଗଗ୍ରସ୍ତ ବିକୃତ ବ୍ୟାପ୍ତିରେ ।

ତେଣୁ ମହାରାଜ
ସବୁ ଯୁକ୍ତି, ସବୁ ତର୍କ ବକ୍ତୃତା ଓ ଉଦ୍‌ବୋଧନ ପରେ
ମୁଁ ମୋଟେ ପାରେ ନା ବୁଝି ଭଗବାନ କୃଷ୍ଣ ବାସୁଦେବ
କୁରୁକ୍ଷେତ୍ର ପରି ବହୁ ବିଭିନ୍ନ କ୍ଷେତ୍ରରେ
କେତେ ଥର.... କାହିଁକି ବା ?
କରୁଥିବେ ଆତ୍ମହତ୍ୟା ଏହିପରି
ଆପଣାକୁ ହତ୍ୟା ଏହିପରି ?



# ଲ୍ୟାଣ୍ଡ୍‌ସ୍କେପ୍
## (ଏକ)

ଏତେ ବସ୍ ଟ୍ରକ୍ କାର୍
ବୋରାବର ଚାଲୁଥିଲା ବେଳେ
ଏ କୃଷ୍ଣଚୂଡ଼ାର ରଙ୍ଗ ଲାଲ୍ ଅବା
ରହନ୍ତା କେମିତି ?

ବିସ୍ମୃତ ବିଲୁପ୍ତ ଦୂର ଶତାବ୍ଦୀର କେଉଁ ମୁହୂର୍ତ୍ତରୁ
ସେ କେଉଁ ପ୍ରଥମ ରକ୍ତ ସଞ୍ଚାରରୁ
ଏ ନାଲି ରଙ୍ଗର ଯାତ୍ରା ଦୂରାନ୍ତର କେଉଁ ଅତୀତରୁ
ଆଜିର ଏ ଏପ୍ରିଲ୍ ଖରାକୁ ।

ଆଜି ଥୁଣ୍ଟା ପାହାଡ଼ର ରାସ୍ତା ଚଟାଣରେ
ବୈଶାଖ ଖରାର ଏତେ ନାଲି ଧୂଳି
କାର୍ ବସ୍ ଟ୍ରକ୍ ଜିପ୍ ଚକର ଧୂଳିରେ
ସ୍ମଞ୍ଜ୍ ଲୁହା କାରଖାନା ଚିମ୍ନିର ଧୂଆଁରେ
ଏ କୃଷ୍ଣଚୂଡ଼ାର ରଙ୍ଗ ସତେ କହ ସତେ କହ
ସେତେ ଲାଲ୍ ରହନ୍ତା କେମିତି ?
ମୁଁ ତେଣୁ ଏ ଏକ୍ସପ୍ରେସ୍ ବସ୍ ଝରକାରୁ
ବୁଝିବାକୁ ଚେଷ୍ଟା କରେ
ମୋ କଳା ଚଷମା କାଚ ଏ ପାଖରୁ
ଏ ନାଲି ରଙ୍ଗର କଣ ସମସ୍ୟା ବା
ଏ କୃଷ୍ଣଚୂଡ଼ାର କ'ଣ ଆଜିର ଚରିତ୍ର ।

ପ୍ରସେସନ୍ ବସ୍‌ପୋଡି ଲାଠିଚାର୍ଯ୍ୟ ଗୁଳିକାଣ୍ଡ ପରେ
ସରକାରୀ ତଦନ୍ତର କମିସନ୍ ଟେବୁଲ୍ ସେପାଖେ
ଅବସରପ୍ରାପ୍ତ ବୁଢ଼ା ଚେଆର୍‌ମ୍ୟାନ୍ ମୋଟା ଚଷମାରେ
ଯେମିତି ଜଟିଳ ପ୍ରଶ୍ନ
ମୋ କଳା ଚଷମା ତଳେ ମୋର୍ ବି କ'ଣ ସେହି ନିର୍ବୋଧତା ।

ଏ କୃଷ୍ଣଚୂଡ଼ାର ନାଲି କେଉଁ ଲୁପ୍ତ ଆକାଶ ସତ୍ତାରୁ
ଆଜି ଆସି ଏ ରାସ୍ତାରେ
ଏତେ ବସ୍, ଟ୍ରକ୍, ଜିପ୍ ବୋରାବର ଚାଲୁଥିବା ବେଳେ
ତା' ରଙ୍ଗ ବା ସେତେ ଲାଲ୍ ରହନ୍ତା କେମିତି ?

ଚରିତ୍ର ସଂହାର ପରେ ଏ ନାଲିର ଯାତ୍ରା ତେବେ
କହ କେଉଁଠାକୁ ?
ଆସନ୍ନ ଦିଗନ୍ତ କେଉଁ, ମ୍ରିୟମାଣ ବିପର୍ଯ୍ୟସ୍ତ
ଅନିଶ୍ଚିତ ଛାରଖାର କେଉଁ ସୂର୍ଯ୍ୟାସ୍ତକୁ ?



# ଲ୍ୟାଣ୍ଡସ୍କେପ୍
## (ଦୁଇ)

ଆଷାଢ଼ର ଏହି ମେଘ ଧୂସରତା ଏ ଆକାଶ ନଷ୍ଟ ଏହି ପ୍ରସୂତିର ମୁହଁ
ନିଗାଡ଼ି ଦେହର ରକ୍ତ ମଥିତ ମାଂସର ଚେଷ୍ଟା ଯଦି ଆସେ ମୃତ ଶିଶୁ ତାର
ତା' ହେଲେ ଉଲଗ୍ନ ରାତି ଦେହର ନିଷ୍ଠୁର ନିଆଁ ଦଳିତ ଦେହ ଓ ଆତ୍ମା
ମାଂସରୁ ରକ୍ତର କ୍ଷୟ, ପ୍ରାଣରୁ ଆତ୍ମାର
କ୍ଷତି ଓ ଯନ୍ତ୍ରଣା ଯେତେ, ତାର ଏହି ବ୍ୟର୍ଥତା ବା
ଏ ମେଘ ଏ ଧୂସରତା ମୃତ୍ୟୁ ଅବା କି ପାପର ମୁହଁ ।

କୁମାରୀର ମାତୃତ୍ୱର ଲାଞ୍ଛନା ଓ ଭୟ ଧରି ଏ ଅନ୍ଧାର ଏକ ଅଭିଶାପ
ଏ ଆକାଶ ଜନ୍ମ ଦେବ ରାତିରେ ଝଡ଼ ବା ତାରା ? ଏ ସନ୍ଧ୍ୟାର ଧୂସର ଦେହରୁ
ମେଘରେ ମେଘରେ ସ୍ତବ୍ଧ, ବିବର୍ଣ୍ଣ କ୍ଲାନ୍ତ ଏ ମୁହଁ ଆଜି ଧରି କେଉଁ ମହାପାତ

ମୋ ସତ୍ତାର ତିକ୍ତତାରେ ଆଜି ଆସି ଛାଇଯାଏ
ମାତୃତ୍ୱର ବ୍ୟର୍ଥ ଚେଷ୍ଟା- ଏ ମେଘ ଏ ଧୂସରତା - ନଷ୍ଟ ଏହି ପ୍ରସୂତିର ମୁହଁ ।

□□

# ଲ୍ୟାଣ୍ଡ୍‌ସ୍କେପ୍
## (ତିନି)

ନିର୍ଜନ ନିଃଶବ୍ଦ ଏହି ଦିପହର
ବହୁତ ଦୂରରୁ, ସ୍ତବ୍ଧ ମୂର୍ଚ୍ଛାହତ ଏ ଖରାର ମର୍ମଦାହ ଭେଦି
କାପ୍ତାର ନିର୍ଜନ ଡାକ
ନିଃଶବ୍ଦ ପାଣିର ସୁଅ ସଞ୍ଚାରରେ
ଏ ନିର୍ଜନ ଦିପହର ନିଃସଙ୍ଗ ଓ ଆହୁରି ନିର୍ଜନ ।

ମୋର ଜନ୍ମ ତାରିଖରୁ, ଶୈଶବ ଓ ଯୌବନରୁ
ଆଜିର ଏ ବୃଦ୍ଧାବସ୍ଥା ଯାଏ
ଏ ନିଃସଙ୍ଗ ନିର୍ଜନତା କ୍ରମେ କ୍ରମେ ଜମି ଜମି
ଆଜି ଯେବେ ପୁଞ୍ଜିଭୂତ ଜମାଟ ନିଶ୍ଚଳ
ଏ ନିର୍ବାକ୍ ଦିପହର ସ୍ତବ୍ଧତାକୁ ପାରିହୋଇ
ବିଚ୍ୟୁତ ମୋ' ସମୟର କେଉଁ ଆକାଶରେ
ଏ ନିର୍ବାକ୍ ଗତି ମୋର କହ କେବେ ସ୍ଥିର ହେବ... ?

ଏ ଖରା ଏ ଦିପହର, କାପ୍ତାର ନିଃସଙ୍ଗ ଡାକ
ନିଃଶବ୍ଦ ସମୟ ଗତି
ନିର୍ଜନତା ନିଃସଙ୍ଗତା
କେଉଁ ପରିସମାପ୍ତିରେ ?....
ନିରର୍ଥକ ମୋ ସତ୍ତାର କହ କେବେ ନିଃସଙ୍ଗ ମୃତ୍ୟୁରେ ?



# ନିଦ

ଦେହରେ ରାତିର ଶାନ୍ତି ବିଛଣାରେ ଅନ୍ଧାରର ନିଦ
ଅନ୍ଧାରର ନିଦ ରହେ ଏହି ଗଳି ରାସ୍ତା କୋଠା ବସ୍ ରିକ୍‌ସା ଦୋକାନକୁ ଘେରି
ଅପନ୍ତରା ଗହୀରର ଖଜୁରୀ ଓ କଣ୍ଟା ଗଛ ଘାସ କିଆବଣ
ଘୋଡ଼ାଇ ମୋ ବିଛଣାରେ ଅନ୍ଧାରର ନିଦ ଓ କୁହୁଡ଼ି ।

ମୋ ଦେହରେ ରାତି ପାଉ ରୂପାନ୍ତର ତୃପ୍ତି ଆସୁ ତାରା ଆଲୁଅର
ପବନର ହାତ ଯାଉ ଆଉଁସି ନଈର ଧାର ଶିଉଳିର ଅବିନ୍ୟସ୍ତ ବାଳ
ଅନ୍ଧାର ଓ ବାଲିଚର କଣ୍ଟା ଘାସ ଘାରି
ବିଛଣାକୁ ନିଦ ଆସୁ ବୁଣି ବୁଣି ମଶୁରୀରେ ଆକାଶର ତାରା ଆଉ ତାରା ।

ଏ ନିଦରେ ଜନ୍ମ ନାହିଁ ସ୍ୱପ୍ନ ନାହିଁ, ଗୀତ ନାହିଁ
ଟ୍ରକ୍ ବସ୍ କୋଠା ଘର ସହରର ନିର୍ଜନ ରାତିରେ
ଏ ନିଦରେ ଅନ୍ଧାରର, ପବନର, ଫାଲ୍‌ଗୁନର ନିଭିଯିବା ନିଦ ।



# କ୍ରୀଶ୍‌ମାସ୍‌

ଶୀତର ଏ ସନ୍ଧ୍ୟା ଜମେ ଚାହା କପ୍ ପିଆଳୀ ବାସ୍ନାରେ
ଶୀତର ଏ ସନ୍ଧ୍ୟା ଜମେ ବଡ଼ଦିନ ଛୁଟିର କ୍ଲାନ୍ତିରେ
ବିଷର୍ଣ୍ଣ ଖରାର ଏହି ଉଦାସତା ଅନ୍ୟମନସ୍କତା
କୋଉ ଅନୁଶୋଚନାର କୋହ ଆଣେ ଏ
ନିର୍ଜନ ଶୀତର ସନ୍ଧ୍ୟାରେ !
କେଉଁ ଅନୁଶୋଚନାରୁ ଜନ୍ମ ତାର ? ସ୍ମୃତି ଆଜି ତା' ଜନ୍ମଦିନର !
ଅସଂଖ୍ୟ ଯୁଗର କେତେ ଦିଗ୍‌ବଳୟ...କେତେ ମରୁଭୂମି
ବରଫ କାନ୍ତାର ଡେଇଁ ପାରି ହୋଇ ଅସଂଖ୍ୟ ସମୁଦ୍ର
ଏ ସନ୍ଧ୍ୟାରେ ସ୍ମୃତି ଆସେ କେଉଁ ମରୁ ପ୍ରାନ୍ତରରୁ
ଆଜି ତା'ର ଜନ୍ମ ତାରିଖର ?

ଜନ୍ମରୁ ତ ଯାତ୍ରା ତା'ର ଛୋଟ ଏକ ସହରର ସଂକୀର୍ଣ୍ଣ ଗଳିରୁ
ବ୍ୟଥିତ ମଥିତ ତିକ୍ତ ମଣିଷର ଅନ୍ତରାତ୍ମା ତଳେ
ତା' ରକ୍ତ କ୍ଷତର ସ୍ନେହ
ଆଣିଥିବା ଆଶା କେତେ, ଶକ୍ତି କେତେ
ଜୀବନ ଓ ମୃତ୍ୟୁରେ ବିଶ୍ୱାସ...
ତା' ଛାଇର ପାଦଶବ୍ଦ ପ୍ରାଚୀନ ସେ ସହରରୁ
ଆଜିର ଏ ସହର ରାସ୍ତାରେ
ଏ ସନ୍ଧ୍ୟାରେ 'ଶୁଭେ କ'ଣ ? ତୀବ୍ରରୁ ଆହୁରି ତୀବ୍ର
ଆଜିର ଏ ସମୟର ପୁଞ୍ଜିଭୂତ ଅନୁଶୋଚନାରେ ?
ବିଷର୍ଣ୍ଣ ଖରାର ଏହି ଉଦାସ ଓ ଅନ୍ୟମନସ୍କତା
ଟ୍ରାଫିକ୍ ସାଇନ୍ ପରି
ବଢ଼ାଏ ବା ହାତ ତାର

ନିଶାର୍ଦ୍ଧର ସେ ନିର୍ଜନ ପହର ଆଡ଼କୁ
ଯେତେବେଳେ ସହରର ଆକାଶରେ ସଂଖ୍ୟାହୀନ ଥଣ୍ଡା ତାରା ସବୁ
ଦେଖୁଥିବେ ଚୁପ୍ ଚାପ୍
ସିମେଣ୍ଟ୍‌ର କ୍ରସ୍ ଘେରି
ଯୁଗରୁ ବହୁତ ଯୁଗ
ସେ ରକ୍ତାକ୍ତ ମୃତ୍ୟୁ ପରେ
ସମୟର ପୁଞ୍ଜିଭୂତ ବେଦନା ଓ ବ୍ୟର୍ଥତାର
ଅନୁଶୋଚନାକୁ ।

□□

# ଜନ୍ମଦିନ

ହାତ ରହେ ଚୁପ୍ ଚାପ୍ ଟେବୁଲ୍, ଡେସ୍କ, ପକେଟ ଭିତରେ
ଗୀତ ଯାଏ ଚୁପ୍ ହୋଇ ରେଡିଓରେ, କ୍ୟାସେଟ୍‌ରେ
ସାଂପ୍ରତିକ ସାହିତ୍ୟ ସଭାରେ,
ଯେତେବେଳେ ବନ୍ଦ ସବୁ ସ୍କୁଲ କଲେଜ ଅଫିସ କଚିରୀ
କାର ଜନ୍ମ ତାରିଖର ଛାଇ ପଡେ ଆମର ଏ ସହରର ନିଶ୍ଚଳ ମୁହଁରେ ?

ଚଢ଼ି ଚଢ଼ି ସମୟର ପାଚିରୀ ଓ ଅସଂଖ୍ୟ ପାହାଚ
ଶିଉଳି ଓ କଣ୍ଟାବାଡ ପାରି ହୋଇ
ଆମେ ଯଦି ଆସି ଆଜି ଫାଇଭ୍‌ଷ୍ଟାର୍ ହୋଟେଲ୍ ରାସ୍ତାରେ
ସ୍ୱାଭାବିକ ଭୁଲିଯିବା ସେଦିନର ରକ୍ତାକ୍ତ ଆକାଶ
ପ୍ରଥମ ପାହାଚ ଚଢ଼ି ଉଠିବାର ନିଷ୍ଠୁର ଯନ୍ତ୍ରଣା,
ଆମର ନିଶବ୍ଦ ରାତି ଆଣୁଥିବ ଆମପାଇଁ ଅନ୍ଧାରରୁ ଆହୁରି ଅନ୍ଧାର
ଆମର ନିଃସଙ୍ଗ ସନ୍ଧ୍ୟା ଆଣୁଥିବ ସୂର୍ଯ୍ୟାସ୍ତରୁ ଅକଥିତ ଭୟ
ଅକ୍ଟୋବର ଆକାଶରୁ ଆସୁଥିବ ପ୍ରତିବର୍ଷ
ଛିନ୍ନ ସ୍ମୃତି ସେ ଶିଶୁର
ତା' ହତ୍ୟାର ଗୁଳିର ଆବାଜ୍
ଆଜି ପୁଣି ବର୍ଷେ ପରେ ଏ ସହର ମୁହଁ ଢ଼ାଙ୍କି ଛାଇ ତାର ଜନ୍ମ ତାରିଖର ।



# ଏମର୍‌ଜେନ୍‌ସି

## (ଏକ)

ହେନା ଫୁଲ ବାସ୍ନାରେ ବେହୋସ ରାତିର ଜହ୍ନ
ଅନିଦ୍ରାର ଟେବୁଲ୍ ଲ୍ୟାମ୍ପ୍ ଫିକା ବଲ୍‌ବ ପରି
ନିଶାଖୋର ଦୋସ୍ତ ମୋର ରମ୍ ବୋତଲ ସରିଗଲା ପରେ
ମାତାଲ୍ ନିଶାର ହସ ଯେତେବେଳେ ଚୁପ୍ ହବ
ଜହ୍ନ ଯେବେ ଜଣାଯିବ ଭୋଲ୍‌ଟେଜ୍ କମିଗଲା ପରି,
ସେତେବେଳେ କେଉଁ ଯୁକ୍ତି, କେଉଁ ଇଜିମ୍, କେଉଁ କୋଟେସନ୍
ତୋ ନିଃସଙ୍ଗ ବାଟ ପାଇଁ ଆଣି ଦେବ ଖୋରାକ୍ ବା
କେଉଁ ଆଶା, କେଉଁ ଡାକଘରର ଠିକଣା ?

ନିଶାଖୋର ଦୋସ୍ତ୍ ମୋର ତୋ ଆଖିର କଳା ପଦ୍ମଫୁଲ
କେଶର, ପାଖୁଡ଼ା ଡେମ୍ଫ ଛିଣ୍ଡି ସଢ଼ିଗଲା ପରେ
ଜହ୍ନା ମାଛି ବେଢ଼ିଗଲେ ଆମେ ତୋର ଦୋସ୍ତମାନେ
କେଉଁ ଗ୍ରୀକ୍ ନାଟକର କେଉଁ କୋରସ୍‌ରୁ
ଜୀବନର ଜ୍ୱାଳା ଆଣି ତୋ କୋକେଇ କଫିନ୍‌ରେ
ଦେବୁ କହ କାର ବ୍ୟାଖ୍ୟା ? ପ୍ରବଚନ ? କାହାର ତର୍ଜମା ?

ନିଶାଖୋର୍ ଦୋସ୍ତ ମୋର ଲାଲ୍ ଲାଲ୍ ଆଖି ତୋର
ତୋ ହସର ଭଣ୍ଡାମି ଭିତରେ
ହେନା ଫୁଲ ବାସ୍ନାର ଏହି ଜହ୍ନ, ଏହି ତାରା ରବିବାର ରାତି
କ୍ଷୟ ହୋଇ ଗଲା ପରେ କାଲିଠୁ ଅପେକ୍ଷା ତୋର
ସପ୍ତାହ ସପ୍ତାହ ଡେଇଁ ରୁଟିନ୍‌ର କେଉଁ ଉପାନ୍ତକୁ ?
ତୋ ଅପେକ୍ଷା କହ କେଉଁ ଦୁଷ୍ଟ ଅପଦେବତାର
ଅଭିଶପ୍ତ ତୋ ଦେଶରେ ତୋ ଆତ୍ମାର ତ୍ରାହି ଅବା ଅପମୃତ୍ୟୁ ପାଇଁ ?



# ଏମରଜେନ୍‌ସି

## (ଦୁଇ)

ପାଚିରୀର ପୋଷ୍ଟର୍ ମ୍ୟାଗାଜିନ୍, ବହି ମଲାଟରେ
ସେ ଆଖି ଅନାଇଁ ରହେ....
ରାସ୍ତାରେ
ରେସ୍ତରାଁ, ବହି ଷ୍ଟଲ୍, ଚା ଦୋକାନରେ
ସହରର କାର୍ ସ୍କୁଟର,
ସଭାରେ କ୍ଲବ୍‌ରେ
ଡାକଘର, ଡାକ୍ତରଖାନାରେ
ଉଦ୍ୟତ ସେ ଆଖି ତଳୁ
ଅତର୍କିତ, ସେ ମୁହଁର ହସ ଆସି ଧକ୍‌କା ଖାଏ
ଅସହାୟ ମୋ ମନର ନିରୂପାୟ ତ୍ରସ୍ତ ଚେତନାରେ ।

ପୁରୁଣା ଖଦିରେ ମୋର ଯେତେ ଧୂଳି ଅପରିଚ୍ଛନ୍ନତା
ପୁରୁଣା ସ୍ୱପ୍ନରେ ମୋର ଅସମ୍ପୂର୍ଣ୍ଣ ଯେତେ କଥା ଗୀତ ଓ କବିତା
ଏ ଯାତ୍ରାର ଆରମ୍ଭରୁ ଯେତେ ଦୁଃଖ ଯେତେ ସ୍ଲୋଗାନ୍
ପ୍ରସେସନ୍ ଯେତେ ହାତକଡ଼ି
ସବୁତ ବରଫ ପରି ଥଣ୍ଡା ଓ ଜମାଟ ବାନ୍ଧେ
ସେ ମୁହଁର ପୋଷ୍ଟର
ସେ ଆଖି, ସେ ଲାଲ୍ ଓଠ
ସେ ସିଲ୍‌କ, ସେ ଚେହେରାର
ଭୟାବହ ଆବିର୍ଭାବ, ଗ୍ରାମ ସହର ବ୍ୟାପି ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ ଭିତରେ ।
ମୋ ସତ୍ତାକୁ କ୍ରମେ ଗ୍ରାସ କରେ
ସେ ସତ୍ତାର ଲଜ୍ଜାହୀନ ନିରଙ୍କୁଶ ଲୋଭ ଭୋକ ଅଶ୍ଳୀଳ ନଗ୍ନତା ।

□□

# ଗୋଟିଏ ମୃତ୍ୟୁର ପରେ ପରେ

## (ଏକ)

ସକାଳର କାଗଜରେ ସେହି ମୁହଁ
ପ୍ରଥମ ଗରମ୍ ଚା କପ୍‌ର ଧୂଆଁରେ
ସେ ଚେହେରା
ନିର୍ଜ୍ଜନ ରାତିର ସ୍ତବ୍‌ଧ ସୀମାନ୍ତରେ
ସେ ଚେହେରା... ।

ହିନ୍ଦିରେ ବା ଇଂରାଜୀରେ
ନିଦ ଅବା ଚେତନାରେ
ସେହି ସ୍ୱର,
ଓତପ୍ରୋତ ନିରନ୍ତର
ସେହି ପ୍ରତିଧ୍ୱନି

ଅଫିସ୍ ବଜାର, ସ୍କୁଲ କଚିରୀରେ
ଦୋକାନରେ, ରାସ୍ତାରେ
ଯୁକ୍ତିତର୍କ, ହାତାହାତି, ସଭା ବକ୍ତୃତାରେ
ସେ ଚେହେରା ସେହି ମୁହଁ,
ହିନ୍ଦି ଅବା ଇଂରାଜୀରେ ସେହି ସ୍ୱର
ଓତପ୍ରୋତ ନିରନ୍ତର ଏକ ପ୍ରତିଧ୍ୱନି
ନିଷ୍ଠୁର ଶୀତର ଥଣ୍ଡା ଆକ୍ରୋଶରେ
ସମୟର ଏ ମୁହୂର୍ତ୍ତ ସ୍ଥିର ମିନିଟରେ
ତଥାପି ସେ ପ୍ରତିଧ୍ୱନି
ଓତପ୍ରୋତ ନିରନ୍ତର...

ଅକସ୍ମାତ୍ ଆଜି କିନ୍ତୁ ଭୟଭୀତ ସମୟ ଦେହରେ
ଏ ମୃତ୍ୟୁ ବା କାହା ପାଇଁ ? ଭୟାବହ ଏ କି ନିର୍ଜ୍ଜନତା ?

# ଗୋଟିଏ ମୃତ୍ୟୁର ପରେ ପରେ
## (ଦୁଇ)

"ସେ ଆତ୍ମାର ମୃତ୍ୟୁ ନାହିଁ"
ଟେଲିଭିଜନ୍, ରେଡ଼ିଓରେ, ଖବରକାଗଜ ପୃଷ୍ଠା
ବକ୍ତୃତାରେ ଶୋକ ପ୍ରସ୍ତାବରେ
"ସେ ଆତ୍ମାର ମୃତ୍ୟୁ ନାହିଁ"

ସେ ଦେହର ମୃତ୍ୟୁ କିନ୍ତୁ ଏତେ ସତ୍ୟ ନିଷ୍ଠୁର ବାସ୍ତବ

ଚନ୍ଦନ କାଠର ନିଆଁ ଜଳିଯାଏ ଜଳିଯାଏ
ତୁମ ଆଖି ସାମ୍ନାରେ ଜଳିଯାଏ ସିଲ୍କ ପରି ଅଧାକଳା ଅଧାଧଳା ବାଳ
ସେ ଯେଉଁ ଓଠର ହସ
ଆଙ୍କିଯାଏ ବହୁ ମୁହଁ ବହୁ ଲୁହ
ବହୁ ଈର୍ଷା ଆକ୍ରୋଶକୁ ଘାରି
ଆସିଥିଲା ଆଜି ଯାଏ
ଋତୁ ପରେ ଋତୁର ଉନ୍ମେଷ ପରି
ସେ ହସ ତ ପୋଡ଼ିଯାଏ, ଜଳିଯାଏ
ସେହି ଓଠ, ସେହି ଆଖି, ସେ ଭ୍ରୂଲତା, ସେ ଚିବୁକ
ଜଳିଯାଏ ପାଉଁଶ ଅଙ୍ଗାର ହୋଇ
ସେ ହାତ ପାପୁଲିର ନଖ
ସେ ସତ୍ତାର ସଙ୍ଗୀତ ଓ ସେ ସତ୍ତାର ସବୁ ବାସ୍ତବତା ।

"ସେ ଆତ୍ମାର ମୃତ୍ୟୁ ନାହିଁ"
ପାହାଡ଼ର କୁହୁଡ଼ିରେ

ପାହାଡ଼ର ବରଫ ଉପରେ
ସହରର ଟ୍ରାମ୍ ବସ୍ ଭିଡ଼ ପାରି ହୋଇ
ସେ ଆତ୍ମା ଫେରିବ କଣ
ଆମର ଏ ଏରୋଡ୍ରମ ପଡ଼ିଆକୁ
ଅକସ୍ମାତ ଝାପ୍‌ସା କାର୍ ଚାଲିଯିବା ପଛ ଲାଇଟ୍ ନାଲି ସଂକେତରେ
ସେ ଆତ୍ମା ଫେରିବ କଣ
ଏହି ଭିଡ଼, ଏହି ସଭା, ଏହି ନେତା
ଏ ସଂଖ୍ୟାଗରିଷ୍ଠ ଦଳ ଅବା ଏହି ବିରୋଧୀଦଳକୁ ?

ଅଜସ୍ର ସମୁଦ୍ର ଢେଉ ବିକ୍ଷୋଭିତ ବିପ୍ଲବର ଏ ଅଶାନ୍ତ ଗତି
ସେ ହତ୍ୟାର ବାସ୍ତବତା ତା ଭିତରେ ।
ଏ ଅଶାନ୍ତ ଆକାଶରେ ସୂର୍ଯ୍ୟାସ୍ତର ଦେହ
ତା ରକ୍ତାକ୍ତ ମୃତ୍ୟୁ ନେଇ ଫେରୁଥିବ ଚିରନ୍ତନ
ବହୁ କ୍ରୋଧ ଆକ୍ରୋଶର ହିଂସ୍ର ବହ୍ନି
ହିଂସ୍ର ସଂହାରକୁ ।
"ସେ ଆତ୍ମାର ମୃତ୍ୟୁ ନାହିଁ"
ସେ ଦେହ ମୃତ୍ୟୁର ଏହି ଭୟଙ୍କର ବାସ୍ତବତା ପରେ
ଶୂନ୍ୟ ସଭା, ଶୂନ୍ୟ ଗୃହ...
ଆମର ସତ୍ତାର ଏହି ଜନ୍ମଗତ ଶୂନ୍ୟତା ଭିତରେ
"ମୃତ୍ୟୁହୀନ" ସେ ସତ୍ତାର ସ୍ମୃତି ଛଡ଼ା ସାହଚର୍ଯ୍ୟ ସାନ୍ତ୍ୱନା ବା କାହିଁ ?



# ଫେରନ୍ତା ବାଟର ପକ୍ଷୀ

ଫେରନ୍ତା ବାଟର ପକ୍ଷୀ
ତୋ ଆଖିରେ ସୂର୍ଯ୍ୟାସ୍ତର ବିବର୍ଣ୍ଣ ଆକାଶ
ତୋ ଡେଣାରେ ଆଚ୍ଛନ୍ନତା ସଞ୍ଚାରିତ ରାତିର ଅନ୍ଧାର
ତୋ କଣ୍ଠରେ ଗୀତ ନାହିଁ, ତୋ ଥଣ୍ଟର ନୀରବତା ତଳେ
ଭୋକ ନାହିଁ, ତୃଷ୍ଣା ନାହିଁ....ଅନ୍ତସାର ଶୂନ୍ୟ ସବୁ ଶୋଷର ସମାପ୍ତି,
ଫେରନ୍ତା ବାଟର ପକ୍ଷୀ
ତୋ ଡେଣାରେ ଫେରିବାର କ୍ଳାନ୍ତି ଛଡ଼ା ଅନ୍ୟ କିଛି ନାହିଁ ।

ତୋ ଦେହର ଛାଇତଳେ ଢେଉ ଖେଳେ କାଶତଣ୍ଡି ଘାସ
ତୋ ଡେଣାର ନିଶବ୍ଦତା ବାରି ବାରି ନିର୍ଜନ ପଠାରେ
ପବନ ହଠାତ୍ ରହେ ସ୍ଥିର ହୋଇ - ବିଚ୍ଛିନ୍ନ ସୁଅରେ
ଛାଇ ଖେଳେ ତୋ ଆଖିର ଅସରନ୍ତି ନିଃଶବ୍ଦ ଆକାଶ

ଫେରନ୍ତା ବାଟର ପକ୍ଷୀ ତୁ
ତୋ ବାଟ ତ ଛାୟାଚ୍ଛନ୍ନ ଆକାଶର ଆସନ୍ନ ଅନ୍ଧାର
ତୋ ବାଟ ତ ସମାପ୍ତିର ନିଃସଙ୍ଗତା ସମାପ୍ତିର ନିଃସଙ୍ଗ ନିଶ୍ୱାସ ।



# ନିଷ୍ଚିନ୍ତକୋଇଲି

କୋଇଲି ଗାଏ କି ନାହିଁ ସେ ଗାଆଁରେ - ସେଠି କିନ୍ତୁ
ଧାନକ୍ଷେତ ଧାନକ୍ଷେତ ଅପର୍ଯ୍ୟାପ୍ତ ସବୁଜ ସବୁଜ
ଆମ୍ବ ବେଲ ପଣସର ନିଘଞ୍ଚ ତୋଟାରେ
ଦିପହର ନିଦ ଘୋର ଗାଢ଼ ନିଶ୍ଚଳ ନିବୁଜ
ପତ୍ର ଡାଳ ଗହଳର କୋରଡ଼ରେ ଅନ୍ଧାର ଭିତରେ
କୋଇଲି ବି ନିଶ୍ଚିନ୍ତ ନିଖୋଜ ।

ବସ୍ ସେଠି ଛିଡ଼ା ହେଲା । କଣ୍ଡକ୍ଟର "ନିଶ୍ଚନ୍ତକୋଇଲି"
କେହି ତ ଚଢ଼ିଲେ ନାହିଁ କେହି ବି ତ ଓହ୍ଲାଇଲେ ନାହିଁ
ଚୁପ୍‌ଚାପ୍ ଚାରିଆଡ଼େ ଡ୍ରାଇଭର ଖଣ୍ଡିକାଶ ଛଡ଼ା
ନିଦରେ ନିଦରେ ସବୁ ଚୁପ୍‌ଚାପ୍
ସିଲେଇ ମେସିନ୍ ଚକ, ଚା ଦୋକାନ କେଟ୍‌ଲିର ଧୂଆଁ
ଚା ବାଲା ଆଖିପତା
ସେଦିନ ସେ ଦିପହର....ବସ୍ ସେଠି ଛିଡ଼ାହେଲା ବେଳେ
ଆକାଶ ପୃଥିବୀ ସବୁ ବିଲ୍‌କୁଲ୍ ନିଦରେ ନିସ୍ତେଜ ।

କୋଇଲି ନିଶ୍ଚିନ୍ତ ବୋଧେ ସବୁଦିନ ଶୋଇଥାଏ
ସେ ଗାଆଁ ଗହଳ ତୋଟାରେ
ସେଠି ଧାନ କ୍ଷେତ ଘାରି ବାଦଲ୍ ବି ଶୋଇପଡ଼େ
ସେଠି ଆସେ ଆଷାଢ଼ ଫାଲ୍‌ଗୁନ
ପୃଥିବୀ ଓ ଆକାଶରେ ସେ ପୋଷାକ ରଙ୍ଗ କ'ଣ ?
କେଉଁ ଷ୍ଟାଇଲ୍ କେଉଁ ଫେସନ୍‌ର ?

ସହଯାତ୍ରୀ ବନ୍ଧୁ ମୋର
ତୁମ ଆଖି ନିଶ୍ଚଳ ପତାରୁ
ଚାମୁଚ ଚାମୁଚ ନିଦ କାଢ଼ି ଆଣି ମୋ ଆଖି ପତାରେ
ଆସ୍ତେ ଆସ୍ତେ ଢାଳି ଢାଳି
ଦି ପହର ବିଭୋର ନିଦରେ
ମୁଁ ତୁମକୁ ଭଲପାଏ – ଭଲପାଏ
ତୁମର ଓ କୋଇଲିର ନିଶ୍ଚିନ୍ତ ନିଦର ଦେଶ
ନିଶ୍ଚିନ୍ତ କୋଇଲି ଡେଇଁ ଓଡ଼ିଶାର ସୀମା ପାରି ହୋଇ
ବରଫ ଓ ମରୁଭୂମି, ଗାଁ ଘାଟି ଜଙ୍ଗଲର ସହରର
ସବୁ ନଈ ପର୍ବତର ସମୁଦ୍ରର ତୁମର ଆଖିର ବ୍ୟାପ୍ତି
ତୁମର ଓ ମୋର ଏହି ପରିବ୍ୟାପ୍ତ ଏ ଦେଶର
ଏଠି ବସ୍ ଛିଡ଼ା ହେବା ମୁହୂର୍ତ୍ତର ସୁନ୍ଦର ଆକାଶ ।



# ନିଶ୍ଚିନ୍ତକୋଇଲି-ତିରିଶ ବର୍ଷପରେ

କୋଇଲିର ମୃତ୍ୟୁ ପରେ ବଜାରରେ ବହୁତ ଦୋକାନ
ରାସ୍ତାରେ ବି ଲୋକ ଭିଡ଼, ବ୍ୟବସାୟ, କାର୍-ଟ୍ରକ୍ ବସ୍ ବି ବହୁତ
ଧାନକ୍ଷେତ ଝୋଟ ବଣ କୋଇଲିର ମୃତ୍ୟୁର ସ୍ମୃତିରେ
ଦେଖାଯାଏ ବିପର୍ଯ୍ୟସ୍ତ ଧୂସର ବିକ୍ଷତ ।

କୋଇଲିର ମୃତ୍ୟୁ ପରେ ରାଜାଙ୍କର ସୈନ୍ୟ ପ୍ରତିହାରୀ
ଦିଗ୍‌ବଳୟ ପାରି ହୋଇ କେବେଠୁ ଗଲେଣି ଚାଲି
ବଜାରର ଦୋକାନ ଭିତରେ
ରେଡ଼ିଓରେ ଗୀତ ବାଜେ ଇଲେକ୍‌ସନ୍ ସ୍ଲୋଗାନ୍ ସବୁଠି ।
ଆଜିକାଲି ଏଠି ଯେବେ ବସ୍ ଆସି ଧୀରେ ଛିଡ଼ା ହୁଏ
ବସ୍‌ଯାତ୍ରୀ ବନ୍ଧୁ ମୋର କୋଇଲିର ନିଖୋଜ ସ୍ମୃତିରେ
ଏ ମୋର ଓଡ଼ିଆ ମନ ଉଦାସ ବ୍ୟଥିତ ଖୋଜେ
ଦୋକାନ ଭିତରେ ମିଶି ହଜି ନିଭି ଯାଇଥିବା
ତା ଆକାଶ ତା ପୃଥିବୀ ତାର ନିଜ ଦେଶର ଠିକଣା ।



# ମାର୍ଶାଘାଇ

ଏଠି ତ ସକାଳ ଆସେ ହଳଦିବସନ୍ତ ପରି
କାକର ଓ ଖରା ଛିଞ୍ଚି ଘାସରେ ପତ୍ରରେ
ସକାଳ ଖରା ତ ଏଠି ନାଲି ହାତ ପାପୁଲିରେ
କୁହୁଡ଼ି ଆଡ଼େଇ ଯାଏ ଆମ୍ବତୋଟା ଖଜୁରି ଗଛରୁ,
ଆଉ ପାଖେ ଏ ଗାଆଁର ରାଜନୀତି ଧାନକଳ
ବ୍ୟବସାୟ ଚାଲୁଥିବାବେଳେ
ଏ ପାଖେ କେନାଲ୍ ପାଣି ଛାତିରେ ତା ଚାପି ଧରେ
ଖରା ଆଉ କୁହୁଡ଼ିର ନରମ ଦେହର ସ୍ନେହ
ଆକାଶର ନେଳି ଆଖି ଚାହାଣିରେ
ଛାଇ ଯେତେ ଭଲ ପାଇବାର ।

ଏଠି ତ ତୂଳିରୁ ରଙ୍ଗ କେବେହେଲେ ସରେ ନାହିଁ
ଧୂସର ପାଉଁଶ ରଙ୍ଗ ଆଷାଢ଼ ମେଘର
ଶରତ ବାଦଲ୍ ଯାଏ ଧାନକ୍ଷେତ ଲହରୀରେ
ଇତସ୍ତତଃ ଛାଇ ଢାଳି ମିଶି ମିଶି ଆକାଶ ନୀଳରେ
ଏଠି ତ ଫାଲ୍‌ଗୁନ ଆଣେ କଣ୍ଟାଫୁଲ ଅରମାରେ
ଆସନ୍ନ ଖରାର ତାତି
ଆସନ୍ନ ଖରାର ନିଦ ଥୁଣ୍ଟା ବିଲ ବାଦାମି ଦେହରେ ।
ଏଠି ତ କେନାଲ୍ ପାଣି ହଳଦିଆ ରିବନ୍‌ରେ
ସନ୍ଧ୍ୟା ଆସେ ଛାଟି ଛାଟି ନାଲି କାଳି
ଟାଣି ଟାଣି ଗାଢ଼କଳା ପେନ୍‌ସିଲ୍ ଦାଗ,

ଏଠି ତ ମାଟିର ଭାଷା ଚୁପ୍ କେବେ ହୁଏ ନାହିଁ
ଶୀତ ରାତି ଅନ୍ଧାରରେ କାକରର କଥା କେତେ

କନିଅର ସଜପାଖୁଡ଼ାରେ
ଝିଙ୍କାରିର ଝିକ୍ ଝିକ୍ ଜିଦ୍‌ଖୋର ଦୁଷ୍ଟ ପିଲା ପରି
ରାତିକୁ ଅନିଦ୍ରା ରଖେ ଥୁଣ୍ଟା ବିଲ ଗୁଗୁଚିଆ ଘାସ ଅରମାରେ ।
ପତ୍ରଝଡ଼ା ଚଇତ୍ରର ନିର୍ଜନ ରାତିର କଥା
ଟେଣ୍ଟେଇ ପକ୍ଷିର ଡାକ
ବାଦୁଡ଼ି ଡେଣାର ଝାପଟା
ଜହ୍ନ ତାରା ଆକାଶରୁ ମିଶେ ଆସି ମୋ ଆଖିର ନିଶବ୍ଦ ନିଦରେ ।

ମୋ ଶୁପ୍ତି ଓ ଚେତନାର ନିର୍ବାକ ସମୟ ଘାରି
ଆଜି ଏଠି ପୃଥିବୀର ଏତେ ବେଶୀ ଅହେତୁକ ସ୍ନେହ
କେଉଁ ମାର୍ଶ ସାହେବର * ବିଗତ ସ୍ମୃତିରୁ ଆସି
ଏତେ ରଙ୍ଗ, ଏତେ ଗୀତ
ପାଣି ପଙ୍କ ଅରମାରେ ଏତେ ଘାସ, ଏତେ କଣ୍ଟାଫୁଲ
ମୋର ସନ୍ଧ୍ୟା ସକାଳର ଦିପହର ନିଃସଙ୍ଗ ରାତିର
ମୁମୂର୍ଷ ଚେତନା ଛୁଇଁ ଜୀର୍ଣ୍ଣ କ୍ଲାନ୍ତ ମୋ ଅନୁଭବରେ
ଏ ପୃଥିବୀ ଚେଇଁ ଉଠେ ଜୀବନର ଭଲପାଇବାରେ ।
ଏ କ୍ଷତିପୂରଣ କଣ ମୋର ନଷ୍ଟ ଚେତନାର
ତିକ୍ତତା ଓ ଅନ୍ତର୍ଦାହ ପାଇଁ ?
ପୃଥିବୀ ସୁନ୍ଦର ଏଠି । ଦେହ ତ ନିର୍ଯ୍ୟାସ ତାର
ମନ ଏଠି ନୀଳ ନୀଳ ନିର୍ଜନ ଆକାଶ
ମୁଁ ଭଲ ପାଇଚି ତେଣୁ କେନାଲ୍‌ର କୂଳେ କୂଳେ
ଘାସ ଆଉ ଧାନକ୍ଷେତ, ମାଛରଙ୍କା ଶଙ୍ଖଚିଲ
ପାଣି ପଙ୍କ କଣ୍ଟା ଫୁଲ
ଖଜୁରୀ ତାଳର ଡାହି ଛୁଇଁ ଛୁଇଁ ଫେରୁଥିବା
ପବନର ଅନାସକ୍ତ ସ୍ନେହ ଓ ନିଶ୍ୱାସ ।



*କିମ୍ବଦନ୍ତୀ ଅଛି ଯେ ମାର୍ଶ ନାମକ ଜଣେ ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀ ସହିତ ଆସି ଗୋଟିଏ କେନାଲ୍ ଖୋଳାଇଥିଲେ । କେନାଲ୍ ସରିବା ପରେ ତାଙ୍କୁ ଆଉ ଦେଖିବାକୁ ମିଳି ନ ଥିଲା ।*

# ମାର୍ଶ ସାହେବର କ୍ରିସ୍‌ମାସ୍

Marsh you fool of an Englishman
ତୋ ଛାଇ ତ ମିଶିଗଲା
ଲୁଣା ନଈ ମୁହାଣର ଲୁଣି ପାଣି ଢୁଆର ଫେଣରେ
ମାଛରଙ୍କା ଚଢ଼େଇର ଛାଇ ପରି ସେଦିନର ସନ୍ଧ୍ୟାର ଛାଇରେ ।

ସେଦିନଠୁ ଶୀତ କିନ୍ତୁ ଫେରି ଆସେ ପ୍ରତିବର୍ଷ,
ବଡ଼ଦିନ ରାତି
ମୁହାଣର ବାଲିଚର ତାଳବଣ ହେନ୍ତାଳର ଅପନ୍ତରା ଡେଇଁ
ଉତ୍ତରା ପବନ ଆସେ ଧାନର ମହକ ଧରି କୁହୁଡ଼ି ସହିତ
ଅନ୍ୟ ସେହି ଲୋକଟିର ସ୍ମୃତିର ସଙ୍କେତ ଆଣି
ଥଣ୍ଡା ରାତି ଜହ୍ନ ଆଲୁଅରେ ।

ତୋ ଜାହାଜ ତଟେ ଛାଡ଼ି ସେଦିନର ସୂର୍ଯ୍ୟାସ୍ତରେ ନିଭିଗଲା ପରେ
ତୁ ଏଠିକି ଫେରି ଆସୁ ଛାଇ ହୋଇ ପ୍ରତିବର୍ଷ ।
ତୋ ଛାଇ ଜମାଟ ବାନ୍ଧେ ଯୁଣ ଛକ ଅନ୍ଧାରରେ ଆଜିଯାଏ
ସେ ଦିନଠୁ ଛିଡ଼ା ହୋଇ ରହିଥିବା ବରଗଛ ପତ୍ର ଓହଳରେ ।

ଏଠି ବର୍ଷ ଗୋଟାକର ତୋଫାନ ପବନ
ଖରାଦିନ କୃଷ୍ଣଚୂଡ଼ା ହେମନ୍ତର ପ୍ରଥମ କୁହୁଡ଼ି
ଚଇତ୍ରର ଝଡ଼ା ପତ୍ର - ସବୁଜ ସବୁଜ କ୍ଷେତ ଶରତ ଋତୁର
ସମସ୍ତଙ୍କ ଅପେକ୍ଷା ତ ବର୍ଷଯାକ ସତେ ଅବା
ସେ ଲୋକର ଜନ୍ମଦିନ ପାଇଁ
ଆଜିର ଏ ଥଣ୍ଡା ରାତି ମଝି ପହରକୁ ।

ସେ ଲୋକର ଛାଇ ବି ତ ପ୍ରତିବର୍ଷ ହଜିଯାଏ
ଥଣ୍ଡା ରାତି ଝାପ୍‌ସା କୁହୁଡ଼ିରେ
ତାର ଜନ୍ମ ମୁହୂର୍ତ୍ତର ଲଗ୍ନ ଗଲା ପରେ ।
ତା ଛାଇ ପ୍ରଥମେ କେବେ ପଡ଼ିଥିଲା ପୃଥିବୀରେ
କେଉଁ ଛୋଟ ସହରର ସଂକୀର୍ଣ୍ଣ ଗଳିରେ
ସେଦିନଠୁ ଆଜିଯାଏ ଅପେକ୍ଷା ଅପେକ୍ଷା ଖାଲି......
ଯୁଣ ଛକ ଅନ୍ଧାରରେ ହଜିଥିବା ଡଙ୍ଗା ଘାଟ
ହଜିଥିବା ନଈଧାର ନିଶବ୍ଦ ସୁଅର
ପୁଞ୍ଜିଭୂତ ବେଦନାର ବ୍ୟଥାତୁର ନିସ୍ତବ୍‌ଧତା.....
ଦ୍ୱିତୀୟ ଥରକ ପୁଣି ତାର ଜନ୍ମ ମୁହୂର୍ତ୍ତକୁ
ତା ଦ୍ୱିତୀୟ ଫେରିବାର କଲ୍ୟାଣ ଓ ଆଶିର୍ବାଦ ପାଇଁ ।

ଲକ୍ ଗେଟ୍ ପାଖରେ ତୋ ଜମାଟ ଶୀତର ରାତି
ତୋର 'ଗ୍ରଗ୍' 'ରମ୍ ପଞ୍ଚ୍' 'ରୋଷ୍ଟ୍ ବିଫ୍' – କ୍ରିସ୍‌ମାସ୍ ତୋର
ସେ ଲୋକର ଦୟା କ୍ଷମା – ତା ହତ୍ୟାର ରକ୍ତାକ୍ତ ସ୍ମୃତିରେ
ତାର ଜନ୍ମ ମୁହୂର୍ତ୍ତରେ ତୋ ପ୍ରାର୍ଥନା କଣ ଥିଲା ?
କେଉଁ ସାମ୍, କେଉଁ ଗୀତ ତୋ ଆତ୍ମାରୁ ଝୁରି ଝୁରି
ମିଶିଥିଲା ସେ ରାତିର କୁହୁଡ଼ି ଓ ଝିଙ୍କାରୀ ଶବ୍ଦରେ ?

You poor lonely miserable fool
ତୁ କାହିଁକି ଆସିଥିଲୁ ଏ ରାଜ୍ୟକୁ ?
ତୋ ରାଜାର ମଜୁରୀକୁ ? ଅବା ତୋର ବୋକାମିର ଭୁଲ ଖିଆଲରେ
ତୁ ଆସି ଏଠିକି ହଠାତ୍ ବାଟ ହୁଡ଼ି ହଜିଗଲୁ
ନିଖୋଜ ନିଶ୍ଚିହ୍ନ ?
ମୁଁ ବି ତ ବୁଝେନା ନିଜେ କେଉଁ ଭୁଲ୍ କେଉଁ ଖିଆଲରେ
ମୁଁ ଆସିଚି ଖୋଜି ଖୋଜି ଛାଇ ତୋର
ଆଜିର ଏ ଥଣ୍ଡା ତାର ନିର୍ଜନ ରାତିକୁ ।

ତଥାପି ତା କଲ୍ୟାଣର ଏ ନିର୍ଜନ ଜନ୍ମ ମୁହୂର୍ତ୍ତରେ
ମୁଁ ବଢ଼ାଏ ହାତ ମୋର ସମୟର ଏ ପାଖରୁ ମୁହାଣର ସେ ପାଖକୁ

ଖୋଜି ଖୋଜି ତୋ ନିଃସଙ୍ଗ ଏକୁଟିଆ ହାତ
ତା ଦ୍ୱିତୀୟ ଫେରିବାର ଅଲୌକିକ ମୁହୂର୍ତ୍ତର ତୋ ପରି ମୋ
ବ୍ୟର୍ଥ ଅପେକ୍ଷାରେ ।

ତା କଲ୍ୟାଣ, ଦୟା କ୍ଷମା,
ତାର ସ୍ନେହ, ତା ଆଶ୍ଲେଷ
ତା ଆଶ୍ରୟ ଆଶୀର୍ବାଦ ପାଇଁ ।



# କମ୍ରେଡ୍ ମାମୁଁ

ଆଜି ତେବେ ଅହେତୁକ ଏ ଗୀତର ଦରକାର କଣ ?
କଲମରେ କବିତାରେ ଅନ୍ୟ ଜଣେ ଉତ୍କ୍ଷିପ୍ତ କବିର *
ଯେତେ କ୍ରୋଧ ଯେତେ ଘୃଣା ବିଦ୍ରୂପର ତୀକ୍ଷ୍ଣ ଛୁରୀ ମୁନ
ଆଜି ତ ନିଶ୍ଚଳ ସ୍ତବ୍ଧ
ସେଥିରେ ବା ଯାଏ ଆସେ କେତେ ?
ସେ କବିର ମୃତ୍ୟୁ ପରେ ତା ସ୍ମୃତି ତ ବିଲୁପ୍ତ ବିଗତ ।

କମ୍ରେଡ୍ ମାମୁଁ ମୋର,
ଏହି ଅଳ୍ପ କେତେ ଦିନ ଭିତରେ ତ ଆପଣଙ୍କ
ପୁରୁଣା ପୃଥିବୀ
ବିଶେଷ ବଦଳି କିଛି ଯାଇ ନାହିଁ ॥
ଏବେ ବି ଭିଓଲା ବାଜେ ଗାଢ଼ ଲାଲ୍ ବୁଗେନ୍ ଭିଲାରେ
ଏବେ ବି ତ ଖରାଦିନ ପବନରେ ବିଲ ତୋଟା ଗହୀର ଭିତରୁ
ଫିରିକି ଫୁଲର ବାସ୍ନା ଭାସି ଆସେ
ଆଉ ଜଣେ କବିର * ସ୍ମୃତିରେ ।
କିଛି ତ ତଫାତ୍ ନାହିଁ
ଲୋକମାନେ ଠିକ୍ ଆଗ ପରି
ଆମର ଏ ସମୟର ସବୁ ଚାଲ୍ ସବୁ ଠକାମିରେ
ଜୀବନ ଚାଲିଚି ଠିକ୍ ବାଟ ଧରି - କଟକର ରାସ୍ତାରେ ଗଳିରେ
କଣ୍ଟ୍ରୋଲ ଦୋକାନରେ, ବସ୍ଷ୍ଟାଣ୍ଡ, ରେଲ୍ ଷ୍ଟେସନରେ
ଲୋକ ଭିଡ଼ ଠିକ୍ ଆଗପରି ।

---

* *ଅନନ୍ତ ପଟ୍ଟନାୟକ*

* *କୃଷ୍ଣମୋହନ ପଟ୍ଟନାୟକ ।*

ଶୋକ ସଭା ବିବୃତିରେ କାଗଜର ଶୋକ ସମ୍ବାଦରେ
ଆପଣଙ୍କ "କର୍ମମୟ ନିରଳସ" ଜୀବନର ସ୍ମୃତି
ଆଲୋଚନା ହେଲା ପରେ ଆପଣ ଅତୀତ ହୋଇ
ମିଶିଗଲେ ଆଧୁନିକ କବିତାର ଇତିହାସ ସେ ଯେଉଁ ପୃଷ୍ଠାରେ
ସେ ପୃଷ୍ଠା ବିରକ୍ତିକର ହେବ ନିଶ୍ଚେ
ଓଡ଼ିଆର ଏମ୍. ଏ. ଛାତ୍ର ପରୀକ୍ଷାର ପ୍ରସ୍ତୁତି ଚେଷ୍ଟାରେ ।
ଆପଣଙ୍କ କବିତାର କେତେ ଧାଡ଼ି କୋଟେସନ୍
ଶୁଣାଯିବ ହୁଏତ ବା,
ରାମଚନ୍ଦ୍ର ଭବନରେ, ବିଷୁବ ମିଳନ ଅବା ଅନ୍ୟ କେଉଁ
ସାହିତ୍ୟ ସଭାରେ ।

କିନ୍ତୁ ଯେଉଁମାନେ
ଅନ୍ଧାର ରାତିର ସ୍ତବ୍ଧ ପ୍ରହରର ପୁଞ୍ଜିଭୂତ ବେଦନା ସହିତ
ଶୁଣିଚନ୍ତି ଭୟାତୁର ସନ୍ତର୍ପଣ ଶବ୍ଦ ସମୟର
ଯେତେ ଜଣ ଅସହାୟ ନିଃସଙ୍ଗ ବାଟୋଇ
ନିଜ ନିଜ ଦୁଃସ୍ୱପ୍ନର ଆକ୍ରୋଶରେ ଅଭିଭୂତ ହୋଇ
ହଠାତ୍ ବା ବାଟ ପାଖ ଡ୍ରେନ୍‌ରେ ଖାଲରେ
ରହିଯିବେ ସ୍ତବ୍ଧ ସ୍ତମ୍ଭିଭୂତ...
ସେମାନଙ୍କ କ୍ଳାନ୍ତ ଦୃଷ୍ଟି ସୀମାନ୍ତରେ
ସମୟର ତିକ୍ତ ପରିଧିରେ
ଆପଣଙ୍କ ଚାହାଣିର ତୀକ୍ଷ୍ଣ ମୁନ
ଆକଣ୍ଠ ଗରଳ ପାନ ଆପଣଙ୍କ
ଆପଣଙ୍କ ଶାଣିତ ସେ ହସ
ରହିଥିବ ଚିରଦିନ ଜୀବନର ଅଶାନ୍ତ ପ୍ରେତାତ୍ମା
ଆପଣଙ୍କ ଗୀତ ଥିବ
ନିଃସଙ୍ଗ ବେଦନାତୁର ମଣିଷର ରକ୍ତ କଣିକାରେ
ମୁକ୍ତିର ଏ ପିପାସାରେ ଚାଲିବାର ନିର୍ମମ ତୋଫାନ ।

□□

# ସାମ୍ନାରେ ଶୀତ ରାତି

ସାମ୍ନାରେ ଶୀତ ରାତି ଅସରନ୍ତି ଅନେକ ମୁହୂର୍ତ୍ତ
ଅସରନ୍ତି ଶୀତ ରାତି ଆଦିଗନ୍ତ ସମୟ ସମୟ
ନିରର୍ଥକ ଏ ଯାତ୍ରାର ପୁଞ୍ଜିଭୂତ ଗ୍ଲାନି ଅବସାଦ ।
ପବନର ଥଣ୍ଡା ହାତ ପୃଥିବୀର ଅନ୍ଧାର ଭିତରେ
ମୋ ମନର ସ୍ୱପ୍ନ ଆଣେ କାହିଁକି ବା ଜହ୍ନ ଓ ତାରାର !

ଜହ୍ନ ଓ ତାରାର ସେ ତ କେଉଁ ଅତୀତର ସ୍ମୃତି
ଜହ୍ନ ଓ ତାରା ତ କେଉଁ ହଜିଥିବା ଦିଗନ୍ତରେ
ଲାବଣ୍ୟବତୀର ନିଦ । ସ୍ମୃତିର ଅନ୍ଧାର ତଳେ
କେତେ ମୁହଁ ହସର ବିସ୍ମୟ ।

ତା ଆଖିର ଅନ୍ଧାରରେ ରାତି ମୋର ବିଭ୍ରାନ୍ତ ବ୍ୟଥିତ
କକ୍ଷଚ୍ୟୁତ ଯେତେ ତାରା ତା ହସରେ କବିତାର ଅତ୍ୟୁକ୍ତି ଭିତରେ ।
ଏ ଶୀତ ରାତିର ଥଣ୍ଡା ଦେହ ତଳେ ଏ ପୃଥିବୀ
ଯେତେବେଳେ ନିର୍ବାକ୍ ନୀରବ
ବହୁତ ମୃତ୍ୟୁର ପରେ ଅନ୍ୟ ଏକ ମୃତ୍ୟୁ ପାଇଁ
ଏ ହୁଏତ ସମୟର ତୀକ୍ଷ୍ଣ ନଖ ଦାନ୍ତର ଆଘାତ ।



# ବସନ୍ତ ସହିତ ଆସେ

ବସନ୍ତ ସହିତ ଆସେ ବାହାଘର ତିଥି ବ୍ୟାଣ୍ଡ ବାଜା
ନିମନ୍ତ୍ରଣ କାର୍ଡ଼ ଆସେ, ମାଇକ୍‌ର ରାତିଯାକ ଗୀତ
ବସନ୍ତ ସହିତ ଆସେ ଆମ୍ରକଷି କଢ଼ ଚାରିପାଖେ
ମହୁମାଛି ଡେଣାତଳେ ଆସ୍ତେ ଆସ୍ତେ ତାତୁଥିବା
ଫାଲ୍‌ଗୁନର ଖରା ।

ତା ଦେହର ବସନ୍ତରେ ରଙ୍ଗ ଧରେ କୃଷ୍ଣଚୂଡ଼ା ଫୁଲ
ତା ଆଖିର ଆକାଶରେ ରୂପ ପାଏ ପୃଥିବୀର ପ୍ରାଚୀନ ସମୟ
କୁରୁବକ କଦମ୍ବର ସ୍ୱପ୍ନ ଫେରେ ତା ଓଠର ବିଷର୍ଣ୍ଣ ହସରେ
ମୋ ସତ୍ତାର ସୀମାନ୍ତରେ ସେତେବେଳେ ପତ୍ର ଝଡ଼େ
ମୋ ଦେହର ଦିଗନ୍ତରେ ସେତେବେଳେ ସୂର୍ଯ୍ୟାସ୍ତର ବିଷର୍ଣ୍ଣ ବିଦାୟ ।



# ଏସ୍‌ରାଜ ଭାଓଲିନ୍

ଏସ୍‌ରାଜ ଭାଓଲିନ୍ ସିତାର ତାରରେ
ଚମ୍ପାକଢ଼ ଆଙ୍ଗୁଠିରୁ ଝରି ଆସେ ଜହ୍ନରାତି
ଫୁଲର ଝରଣା
ମୂର୍ଚ୍ଛନାର ଏ କୁହୁକ ଘାରି ଦିଏ ଦେହ ମନ
ସବୁ ଫୁଲ, ସବୁ କଢ଼, ସବୁ ମୁହଁ ଦେଖାଯାଏ
ସ୍ୱପ୍ନାଭ ସୁନ୍ଦର
ମୂର୍ଚ୍ଛନାର ଏ କୁହୁକ ଚମ୍ପାକଢ଼ ଆଙ୍ଗୁଠିରୁ
ଭାଓଲିନ୍ ସିତାର ତାରରେ ।

ଭାଓଲିନ୍ ସିତାରରେ କିନ୍ତୁ ଯେବେ ଚୁପ୍ ହୁଏ
ଶବ୍ଦର ତରଙ୍ଗ ସବୁ
ସ୍ଥିର ରହେ ଆଙ୍ଗୁଠିର ଗତି
ସେତେବେଳେ ଥିଏଟର, ନାଚଖାନା ଆସରର ମଣିଷ ଭିତରେ
ପୃଥିବୀ ପାଲଟେ ପୁଣି ଝାଳ ନାଳ ଚିତ୍କାରର
ନିର୍ଲଜ ଉଲଗ୍ନ ଗ୍ରହ
ଏସ୍‌ରାଜ ଭାଓଲିନ୍ ସିତାରର ତାର ଚୁପ୍ ହେଲେ ।

ମୁଁ ଫେରିଚି ଯେତେଥର ନାଚଗୀତ ଆସରରୁ
ମୂର୍ଚ୍ଛନାର ମୃତ୍ୟୁ ପରେ ଏ ରାସ୍ତାର ଅସ୍ଥି କଙ୍କାଳକୁ
ଚାଲିବାର କ୍ଳାନ୍ତି ମୋର ସାମ୍ନାର ସମୟ ଡେଇଁ
ଜମିଯାଏ ଦୂରକୁ ଦୂରକୁ
ଅନ୍ତହୀନ ଗତି ଧରି ଏ ପୃଥିବୀ ଯେବେ ଦିଶେ
ଦିଗହୀନ ଧୂସର ପାଣ୍ଡୁର
ସେତେବେଳେ ତା ସ୍ମୃତିରୁ ଦିଗନ୍ତରେ ବିଷର୍ଣ୍ଣ ଗୋଧୂଳି
ମୋ ପାଇଁ ଫେରାଇ ଆଣେ ତା ସତ୍ତାର କୁହୁକରୁ
ମୋ କ୍ଳାନ୍ତ ସତ୍ତାରେ ପୁଣି ଫାଲ୍‌ଗୁନର ଫୁଲର ମୂର୍ଚ୍ଛନା ।

# ସନେଟ୍‌ର ସେ ସ୍ତ୍ରୀ ଲୋକର...

ସନେଟ୍‌ର ସେ ସ୍ତ୍ରୀ ଲୋକର କଳା ବାଳ ଗାଢ଼ କଳା ଆଖି
ଅଶାନ୍ତ ସମୁଦ୍ର ଢେଉ ପାରି ହୋଇ ହଜିଥିବା ଦୂର ଶତାବ୍ଦୀରୁ
ମୋର ଏ ଅନ୍ଧାର ରାତି ଗହନକୁ ଫେରିଆସେ
ସେ ଯୁଗର ସେ କବିର ଅନ୍ତର୍ଦାହ ନେଇ ।

ମୋର ଏହି ଅନ୍ଧାରର ନିଭୃତ ନିଃସଙ୍ଗ ମନ
ଯେତେ କ୍ଷୋଭ, ଯେତେ କ୍ଷତି ଯେତେ ମୃତ୍ୟୁ
ପୃଥିବୀରେ ଭଲପାଇବାର
ତାର ତିକ୍ତ ଯନ୍ତ୍ରଣାର ଅନୁତାପ ଅନୁଭବ ଧରି
ଆଜି ଏତେ ଭାରାତୁର ।

ତଥାପି ତ ଏ ପୃଥିବୀ କୃଷ୍ଣଚୂଡ଼ା ପଳାସ ଫୁଲରେ
ଫାଲ୍‌ଗୁନର ପବନରେ ଝଡ଼ା ପତ୍ର ଆମ୍ବ ବଉଳରେ
ଏତେ ସ୍ନିଗ୍‌ଧ ସୁନ୍ଦର ଓ ଏତେ ରୂପବତୀ ।

ସେ ରୂପର ଆଚ୍ଛନ୍ନତା ଭାରାତୁର ମୋ ମନର ନଷ୍ଟ ପୃଥିବୀରେ
ସେ ତେଣୁ ମୋ ପାଇଁ ରହେ ବନଲତା ସେନ୍ ପରି
କ୍ଷୟମାନ ମୋ ସତ୍ତାର ଏକ ସ୍ଥିର ନିଭୃତ ମୁହୂର୍ତ୍ତ
ସବୁ ଭଲପାଇବାର ପୁଞ୍ଜିଭୂତ ବେଦନା ଭିତରେ
ପୃଥିବୀର ଏ ଦେହରେ ପ୍ରତିବର୍ଷ ଫେରୁଥିବା
ବସନ୍ତର ଉନ୍ମେଷିତ ଫାଲ୍‌ଗୁନର ଫୁଲର କୁହୁକ ।

□□

# ଫାଲ୍‌ଗୁନର ଫୁଲ ଶୁଖେ...

ଫାଲ୍‌ଗୁନର ଫୁଲ ଶୁଖେ ଧାନ କଟା ସରିଗଲା ପରେ
ଧୂସର ଶ୍ରୀହୀନ କ୍ଷେତ ପଡ଼ିରହେ ବାଦାମି ରଙ୍ଗର
କଣ୍ଟାଗଛ ଘାସ ସବୁ
ଖରାରେ ନିଶ୍ଚଳ ସ୍ଥିର
ଝାଞ୍ଜିର ଭଉଁରୀ ପୁଣି ବାସ୍ତୁହରା କାପ୍ତାର କାନ୍ଦଣା
ଭାରାତୁର କରି ରଖେ ଅବସନ୍ନ କ୍ଲାନ୍ତ ଦିପହର ।

ତା ଦେହର ରଙ୍ଗ ଧରି ପୁଣି କେବେ ଫେରିବ ଫାଲ୍‌ଗୁନ
ତା ମନର କୃଷ୍ଣଚୂଡ଼ା ତା ନିଃଶ୍ୱାସ ରାଧାତମାଳର
ମହକ ଓ ରଙ୍ଗ ଧରି ମୋ ପାଇଁ ପୃଥିବୀ ହେବ
ବିଶ୍ରାମର ନୀରବ ମୁହୂର୍ତ୍ତ
ତା ବେଣୀର ଅନ୍ଧାରରେ ସମୟର ଦୁର୍ନିବାର ଗତି
ମୁହୂର୍ତ୍ତକ ସ୍ଥିର ହେବ
ମୋର କ୍ଲାନ୍ତ ଚେତନାରୁ ନିଭିଯିବ ନିରଙ୍କୁଶ କାଳ ଓ ଅତୀତ ।



# ଏଠି ଭୋର ପବନରେ...

ଏଠି ଭୋର ପବନରେ ତଳେ ଝରେ କନିଅର ଫୁଲ
କାକରର ଓଦା ଘାସ ଶୁଖିଲା କେନାଲ କୂଳ ଏପାଖ ସେପାଖ
ଦୂରରେ ନଈର ପଠା ଆଚ୍ଛନ୍ନ କୁହୁଡ଼ି ତଳେ
ଏକୁଟିଆ ଝାପ୍‌ସା ତାଳଗଛ
ଏ ମୋର ନିଃସଙ୍ଗ ମନ ସକାଳର ଏହି ପବନରେ
ଖରାର ଚାଲିବା ବାଟ ଖୋଜି ଖୋଜି ହଜିଯାଏ
ଦିଗ୍‌ବଳୟ ଆଡ଼େ ।

ଛଣ ଓ ଛପର ଧୋଇ ବାଦାମି ବିଲର ରଙ୍ଗ ଛୁଇଁ ଛୁଇଁ
ଆଜି ଦିନସାରା
ଏ ଖରା ତ କ୍ରମେ ଯିବ ଚଢ଼େଇ ଗୀତରେ ହଜି
ଦିଗ୍‌ବଳୟ ସେ ପାଖର ତାରା ଓ ଛାଇରେ
ତା ପରେ ପ୍ରସ୍ତୁତି ମୋର ନିଃସଙ୍ଗ ରାତିର ପାଇଁ
କୁହୁଡ଼ି ଓ କାକରର ନିଃଶବ୍ଦ ପ୍ରହର ସବୁ...
ଆଖିରେ ନିଃସଙ୍ଗ ନିଦ ସାମୟିକ ନିଃସଙ୍ଗ ମୃତ୍ୟୁରେ ।

ପ୍ରତିଦିନ ଏ ମୃତ୍ୟୁରୁ ଜନ୍ମ ନିଏ ନିଃସଙ୍ଗତା
ଅନ୍ୟ ଏକ ଅବୁଝ ଅପେକ୍ଷା
ପୃଥିବୀର ଅନ୍ୟ ଏକ ଭଲପାଇବାର ।
ଏ ମୋର ନିଃସଙ୍ଗ ମନ
ଖରାର ଚାଲିବା ବାଟ ଖୋଜି ଖୋଜି ଦିନରୁ ଦିନକୁ
ଅନ୍ଧାରର ଯିବା ବାଟ ଖୋଜି ଖୋଜି ତାରାରେ ତାରାରେ
ଆଜି ଏତେ ଇତସ୍ତତ

ସେ ଅବୁଝ ଅପେକ୍ଷାରେ
ସେ ଅବୁଝ ଭଲପାଇବାର
ଯୁକ୍ତି ଆଉ ସମାଧାନ ପାଇଁ ।
ସେ ମୁହୂର୍ତ୍ତ କେବେ ପୁଣି ?
ମୋ ମୃତ୍ୟୁର ବିସ୍ମୃତି ବା
ତା ସତ୍ତାର କେଉଁ ପ୍ରଶ୍ନ କେଉଁ ଅନ୍ଧାରରେ ?

□□

# ଆହତ ଅଶାନ୍ତ ଦୃଷ୍ଟି

ଆହତ ଅଶାନ୍ତ ଦୃଷ୍ଟି ଦିନଯାକ ସଂଘର୍ଷର
ଆଘାତ ଓ ଆବର୍ଜନା ପରେ
ଚାହେଁ ଯେବେ ନିରାଶ୍ରୟ ଶ୍ରାନ୍ତ କ୍ଳାନ୍ତ ଦୂର ଆକାଶକୁ
ସନ୍ଧ୍ୟାର ନିର୍ଜନ ତାରା ଆକାଶରେ ଶାନ୍ତ ସ୍ଥିର ଅନିମେଷ ଜ୍ୟୋତି
ସେତେବେଳେ ତା ସତ୍ତାର ରକ୍ତାକ୍ତ କ୍ଷତରେ
ଅକସ୍ମାତ ଶାନ୍ତି ଆସେ
ଆକାଶର ଆଦିଗନ୍ତ ବ୍ୟାପ୍ତି ଓ ବିସ୍ମୟ ।

ମୋ ନିଃସଙ୍ଗ ଦିନାନ୍ତର ଯେତେ କ୍ଷୟ କ୍ଷୋଭ ଯେତେ
ଅପମାନ ଅଣସଫଳତା
ତା ଆଖିର ଅନ୍ଧାରରେ ସାନ୍ତ୍ୱନାର ନିଶବ୍ଦ ସୁପ୍ତିରେ
ଆଜି ଯେବେ ଶାନ୍ତ ହୋଇ ଶୋଇ ପଡ଼େ
ହେ ଆକାଶ ହେ ମୋର ପୃଥିବୀ
ତୁମର ଦେହରେ ରହୁ ଚିରନ୍ତନ ତା ଦେହର ଧ୍ୱନି ଓ କବିତା
ତା ସତ୍ତାର ସଂଳାପରେ ବସନ୍ତର ଗୀତ ରହୁ
ମୋ ଧୂସର ଦିଗନ୍ତର ସ୍ମୃତିର ସେ ପାଖେ
ମୋ ପରି ବ୍ୟଥିତ ବହୁ ପଥିକର ସନ୍ଧ୍ୟା ତାରା
ସମୟର ବିସ୍ମୃତିରେ ଆଖି ତାର ବିସ୍ମୟର ସାନ୍ତ୍ୱନାର
ଜୀବନର ନିର୍ନିମେଷ ଜ୍ୟୋତି ।



# ତା ଆଖିର ତୁଳନା ତ

ତା ଆଖିର ତୁଳନା ତ ସକାଳର ନୀଳ କଇଁ ନୁହେଁ
ନୀଳ କଇଁ ପାଖୁଡ଼ାରେ
ମସୃଣ ମୁହଁର ଛାପ ଆକାଶର
ପାଣିର ଅଳସ ଢେଉ
ପବନ ଓ ଘାସର କବିତା ।

ତା ଓଠର ରଙ୍ଗ ନୁହେଁ ଗାଢ଼ ଲାଲ ସନ୍ଧ୍ୟାର ଆକାଶ ।

ସନ୍ଧ୍ୟାର ଆକାଶ ସେ ତ
ଝରକା ଭିତରୁ ଦୃଶ୍ୟ ଆସନ୍ନ ରାତିର
ନିଦରେ ନିଶ୍ଚିହ୍ନ ହୋଇ ନିଭିଯିବା ନୀରବ ବିଶ୍ରାମ ।

ତା ଦେହ ତ ଚଇତ୍ରର ଅବସନ୍ନ ଅପରାହ୍ନ ପରି

ଆସନ୍ନ ଖରାର ରୁକ୍ଷ ତାତିଭରା ସମୟ ସୁଅରେ
ନିଃଶବ୍ଦ ନିରବଚ୍ଛିନ୍ନ ଭାସିଯାଏ ଯେତେବେଳେ
ମୋ ଦେହର ଉପସର୍ଗ ସବୁ
ତା ଦେହ ତ ଚଇତ୍ରର ଦିପହର ଶିଥିଳତା ଧରି
ମୋ ମୃତ୍ୟୁ ମୋ ବିଲୁପ୍ତିରେ ଭରିଦିଏ ଭଲପାଇବାର
ଝଡ଼ାପତ୍ର ଭଉଁରୀରେ ଝଡ଼ିଯିବା ଗୀତର ମୂର୍ଚ୍ଛନା ।



# ଦେହର ନିର୍ଲଜ୍ଜ ଭୋକ

ଦେହର ନିର୍ଲଜ୍ଜ ଭୋକ ଭିତରେ ତ ନଷ୍ଟ ହୁଏ
ମନ ଆଉ ଆତ୍ମାର ପୃଥିବୀ
ଯେଣୁ ଏ ଦେହରୁ ଜନ୍ମ ପୁଣି ପାଏ ଅନ୍ୟ ଦେହ
ତା ପରେ ତ ସମୟର ନିଷ୍ଠୁର ଜୀବନ ତୃଷା
ଅର୍ଥ ଆଉ ବ୍ୟବସାୟ ପରିବାର ରୋଜଗାର ଧରି
ମନର ତ ମୃତ୍ୟୁ ହୁଏ, ରହିଯାଏ ଲାଳସାର କ୍ଷୁଧା,
ବାରମ୍ବାର ଫେରି ଏ ଦେହକୁ ଅନ୍ୟ ଦେହ ପାଇଁ ।

ମୋ ଦେହରେ ସେ ଭୋକର ଅନୁଭୂତି ନିଷ୍ଠୁର ଲାଳସା
ଯେତେ ତୃପ୍ତି ପାଇଲେ ବି ପୁଣି ଫେରେ ଉଦ୍ୟକ୍ତ ନିର୍ଲଜ୍ଜ
ଅନ୍ୟ ଏକ ଦେହ ପାଇଁ । ଜୀବନର ଯନ୍ତ୍ରଣା ସହିତ
ନିର୍ଲଜ୍ଜ ଏ ଭୋକର ବା ଶେଷ କାହିଁ ପରିତୃପ୍ତି କାହିଁ ?

ନିର୍ଲଜ୍ଜ ମୋ ଏ ଦେହର ଭୋକ ରହୁ ତା ଠାରୁ ଦୂରରେ
ମୋର ନଷ୍ଟ ଆତ୍ମା ମନ ପୁଣି ଯଦି ଫେରିପାଏ ସ୍ୱାସ୍ଥ୍ୟ କେବେ
ସେଦିନ ମୋ ଭଲ ପାଇବାର
ସାର୍ଥକ ମୁହୂର୍ତ୍ତ ସବୁ ଆକାଶର ତାରାରେ ତାରାରେ
ପୃଥିବୀର ସବୁ ଘାସ ସବୁ ନଈ ସବୁ ଋତୁ ସବୁ ସଙ୍ଗୀତରେ
ତା ମନ ଓ ଆତ୍ମାର ପୃଥିବୀକୁ ଫେରି ଯିବ
ତା ଦେହରେ ବସନ୍ତର ସବୁ ଫୁଲ ସବୁ ହସ ସବୁ ବସନ୍ତକୁ ।

ତା ଦେହର ବସନ୍ତ ବା ଯଦି କେବେ ବିପର୍ଯ୍ୟସ୍ତ ହୁଏ
ଅନ୍ୟ ଦେହ ଅନ୍ୟ କ୍ଷୁଧା ଅନ୍ୟ ଭୋକ ଅନ୍ୟ ଲାଳସାରେ
ତଥାପି ଏ ମୁହୂର୍ତ୍ତରେ ତା ଦେହର ଅନାସକ୍ତ ବର୍ଷା ଓ ବସନ୍ତ
ରହିଥିବ ମୋ ସ୍ମୃତିରେ ଚିରଦିନ ପୃଥିବୀର କୁମାରୀତ୍ୱ ନେଇ ।

□□

# ଏ ନାଲି ମାଟିର ରାସ୍ତା

ଏ ନାଲି ମାଟିର ରାସ୍ତା କେତେ ଦୂର ଯାଏ କେତେ ଦୂର ?
କେନାଲର କୂଳ ଧରି ସାମ୍ନାର ପୋଲ ପାରି ହୋଇ
ସେ ପାଖ କେନାଲ ଦାଢ଼ ଧରି ପୁଣି
ଏ ନାଲି ମାଟିର ରାସ୍ତା ଛୁଇଁ ଛୁଇଁ ଗାଆଁ ଘର
ଏ କଣ ଶେଷରେ ଯାଏ ନିଶ୍ଚିହ୍ନ ନିଖୋଜ ହୋଇ
ଘାସ ଆଉ ଗୁଡ଼କଙ୍କ କଣ୍ଟାବଣ ସମୁଦ୍ର ବାଲିରେ ?
ତା ପରେ ସମୁଦ୍ର ଢେଉ ଅସୀମ ଅତଳ ପାଣି
ଯେତେ ଦୂର ଯାଏ ଆଖି ପାଏ ?

ନିର୍ଜନ ଏ ବାଟରେ ତ ବହୁତ ବାଟୋଇ ଦୂର ସମୁଦ୍ର ଆଡ଼କୁ
ଆଖିରେ କେବଳ କ୍ଲାନ୍ତି ପିଠିରେ ବହୁତ ବୋଝ
ମନରେ ତ ସମୁଦ୍ରର ଅଦମ୍ୟ ପିପାସା
ଏ ନାଲି ମାଟିର ମୋହ ଏତେ ବାଟ ଚାଲିବାର କ୍ଲାନ୍ତି ସତ୍ତ୍ୱେ
ରଖିଚି ଆଚ୍ଛନ୍ନ କରି ମସ୍ତିଷ୍କର ସବୁ ସ୍ନାୟୁ ରକ୍ତର କଣିକା ।
ତଥାପି ନିର୍ଜନ ବାଟ - ସେମାନେ ତ ସମସ୍ତେ ଏକାକୀ ।

ଏ ବାଟରେ ଯିବା ପାଇଁ ଏ ମୋର ଉତ୍ସୁକ ମନ କାହା ଅପେକ୍ଷାରେ ?
କାହାର ଅସ୍ପଷ୍ଟ ଛାଇ ଏଠି ମୋର ପାଖେ ପାଖେ
ଗୁଡ଼କଙ୍କ କଣ୍ଟାଘାସ ବାଲି ନିର୍ଜନରେ
ନିଶ୍ଚିହ୍ନ ନିଖୋଜ ହୋଇ ମୋ ସହିତ ହଜି ଯିବା ପାଇଁ ?

ତାପରେ ତ କୂଳହୀନ ଅତଳ ସମୁଦ୍ର ।



# ନିଭୃତ ଏକାନ୍ତ ମୋର

ନିଭୃତ ଏକାନ୍ତ ମୋର ଏ ମନର ପୃଥିବୀର
ବୟସ ତ ହେଲାଣି ବହୁତ
ବହୁତ ବସନ୍ତ ଆସି ଏଠି ତ ଯାଇଚି ମରି
ବର୍ଷା ମେଘ ଝଡ଼ ଓ ଅନ୍ଧାର
ବହୁତ ନଈର ସୁଅ ଏଠି ତ ଯାଇଚି ହଜି
ନିର୍ଜନ ମୋ ଆକାଶ ଦେହରେ,
କକ୍ଷଚ୍ୟୁତ ତାରାର ତୀର୍ଯକ ଗତି
ଯାଇଚି ନିଶ୍ଚିହ୍ନ ହୋଇ
ନିର୍ଜନ ଏ ପୃଥିବୀରେ ମୃତ୍ୟୁର କେବଳ ଛାଇ
ଅକଥିତ ମୃତ୍ୟୁର ବେଦନା ।

ସେ ମୃତ୍ୟୁର ଛାଇ ଜମେ ପୃଥିବୀର ଛାତି ପରେ
ଗୋଧୂଳି ତ ନୀରବ ଧୂସର
ଧୂସର ଗୋଧୂଳି ତଳେ
ଛାତିର ସ୍ପନ୍ଦନ ଧରେ ସମୟର ଅବିଶ୍ରାମ ଗତି
ସେଥିରୁ ନିସ୍ତାର ନାହିଁ
ମୃତ୍ୟୁରୁ ନିସ୍ତାର ଆସେ ମୃତ୍ୟୁରେ କେବଳ ।

ଆଜି ତେଣୁ ତା ଦେହର ରଙ୍ଗ ଯେବେ ମ୍ଳାନ ହୋଇ ଆସେ
ତା ଓଠର ଚିହ୍ନ ଯେବେ ନିଭିଯାଏ ନିଷ୍ପ୍ରଭ କରୁଣ
ହେ ପୃଥିବୀ ହେ ମୋର ଆକାଶ
ତୁମର ବିଲୁପ୍ତି ପାଇଁ ମୋର ଆଜନ୍ମ ଅପେକ୍ଷା
ଶେଷ ହେଉ ଶେଷ ହେଉ
ତାର ଭଲ ପାଇବାର ଅହେତୁକ ନିଷ୍ଫଳ ସ୍ମୃତିରେ ।

ବହୁତ ମୃତ୍ୟୁର ପରେ
ମୃତ୍ୟୁର ନିସ୍ତାର ଆସେ ମୃତ୍ୟୁରେ କେବଳ ।

□□

# ସେ ରହେ ରକ୍ତରେ ମୋର...

ସେ ରହେ ରକ୍ତରେ ମୋର ଗୋପନରେ
ଏକ ମୃଦୁ ଗୀତର ମୂର୍ଚ୍ଛନା
ସହରର କାର୍ ବସ୍ ଲୋକ ଗହଳରେ
ସେ ରହେ ମୋ ଚେତନାରେ ଏକ ମୃଦୁ ଉତ୍ତେଜନା ପରି ।
ଏ ପୃଥିବୀ ଯେତେବେଳେ ଛୁଟେ ଆଜି ଭୀତ ତ୍ରସ୍ତ
ମହା ପରିନିର୍ବାଣର ଆସନ୍ନ ଭୟରେ ।
ସେ ରହେ ମୋ ସତ୍ତା ତଳେ ଛିଦ୍‌ଖୋର
ଜୀବନର ଏକ ସୂକ୍ଷ୍ମ ପ୍ରଗଲ୍‌ଭ ଝରଣା ।

ଆମର ଏ ସମୟର ଜୀବନର ଆତଙ୍କିତ ସ୍ଥିତି
ହଠାତ୍ ବା ଅକସ୍ମାତ୍ କେଉଁ ମୁହୂର୍ତ୍ତରେ
ହଠାତ୍ ନିଶ୍ଚିହ୍ନ ହୋଇ ମିଶିଯିବ ଧୂଆଁରେ ବାଷ୍ପରେ ।

ସେ ମୃତ୍ୟୁର ଭୟାତୁର ମଣିଷର ମୁହ୍ୟମାନ ରାତି
ମୂର୍ଚ୍ଛିତ ନିର୍ଜୀବ ଆଜି ଯେଉଁ ଅପେକ୍ଷାରେ
ଅତର୍କିତ ସେ ମୁହୂର୍ତ୍ତ ଯାଏ
ତା' ସତ୍ତା ନିଖୁଣ ରହୁ
ଜୀବନର ସୁଅ ରହୁ ପ୍ରଗଲ୍ଭ ଝରଣା ପରି
ତା ରକ୍ତରେ ତା ହସରେ ତା ଦେହର ରଜନୀଗନ୍ଧାରେ ।

□□

# କ୍ୟାମ୍ପସ ବ୍ଲୁଜ୍
(Campus Blues)

ଏପ୍ରିଲ ଖରାର ତାତି କଂକ୍ରିଟ୍ ଛାତରେ
ବାସ୍କେଟ୍ ବଲ୍ ପଡ଼ିଆର ଚଟାଣରେ
କ୍ରିକେଟ୍ ପଡ଼ିଆ ଘେରା ତାରବାଡ଼ କଣ୍ଟାର ମୁନରେ,
ଯଦିଚ ବା ରାତି ଅଧ ବାରଟା ସେ ପାଖ
ଟାଇଫଏଡ୍ ତାତି ପରି ଏପ୍ରିଲ୍ ଖରାର ତାତି
ଲାଗି ରହେ ବୋରାବର ବ୍ରୋଞ୍ଜ୍ ଘୋଡ଼ା
କୃଷ୍ଣଚୂଡ଼ା ଗୁଲମୋହର ସୁନାରୀ ଫୁଲରେ ।
କ୍ଷୟ ପକ୍ଷ ଜହ୍ନ ତଳେ ହଷ୍ଟେଲ୍ ସବୁ ଚୁପ୍‌ଚାପ୍
ବୋର୍ଡ଼ର୍ ସବୁ ନିଘୋଡ଼ ନିଦରେ ।

ସେସନ୍ ସରି ଆସିବାର କରୁଣ ଏ ବିଦାୟର
ନିର୍ଜ୍ଜନତା ଆଜି,
ସବୁ ବର୍ଷ ଏପ୍ରିଲର ନିର୍ଜ୍ଜନତା ପରି
ଉତ୍ସୁକ ବହୁତ ମନ
ଉତ୍ସୁକ ବହୁତ ଆଖି ସାମ୍ନାରେ
ଅକଥିତ କେତେ ଆଶା
ଏ ଜହ୍ନର ଛାଇପରି
ରୂପହୀନ ଦେହହୀନ ସମ୍ଭାବନା ବହୁତ ସ୍ୱପ୍ନର ।
ସେମାନେ ଏକାଠି ବୋଧେ ଏକଜୁଟ ହୋଇ
ଏପ୍ରିଲ୍‌ର ଏ ତାତିରେ ଶବ୍ଦହୀନ ଶୋଭାଯାତ୍ରା କରି
ଉଦ୍ୟତ ଫାଟକ ଡେଇଁ ଯିବା ପାଇଁ
ସେ ପାଖ ରାସ୍ତାକୁ,

ସେ ରାସ୍ତା ତ କ୍ୟାମ୍ପସ୍ ବାହାରେ
ଏକୁଟିଆ ଟ୍ରକ୍ କେବେ, ଏକୁଟିଆ ସ୍କୁଟର ବା କାର୍
ଗୀତଗାଇ ଫେରୁଥିବା ଟ୍ରଲିବାଲା
ଆବାଜ୍ କେବେ ପୁଲିସ୍ ସିଟିର
ବିଭିନ୍ନ ବହୁତ ଶବ୍ଦ......
ଅନ୍ୟ ଏକ ପୃଥିବୀର ପ୍ରତିଧ୍ୱନୀ ପରି ।

ଏ କରୁଣ ମୁହୂର୍ତ୍ତ ତ ସମୟରୁ ଛିଣ୍ଡିଥିବା
ଏ କ୍ଷୁଦ୍ର ଭଗ୍ନାଂଶ ଯେପରି......
ଲାଇବ୍ରେରି, କରିଡ଼ର, ବ୍ଲାକ୍‌ବୋର୍ଡ଼, ହଷ୍ଟେଲ ବିଛଣା,
ପୁରୁଣା ପୋଷାକ ପରି ।
ସାମ୍ନାରେ ଅଦେଖା ରାସ୍ତା
ହାତଠରା ଅନ୍ୟ ଏକ ଅଦେଖା ହାତର,
ସେମାନଙ୍କ ଦଳବଦ୍ଧ ପ୍ରସେସନ୍ ଭିତରେ ତ
ଏପ୍ରିଲ୍‌ରେ
ପ୍ରତିବର୍ଷ ଏକା ଏକା ସେମାନେ ସମସ୍ତେ ।

ମୋର ହଠାତ୍ ମନେ ହେଲା
ଏମାନଙ୍କ ସହିତରେ ମୁଁ ବି ଅନ୍ୟ ଜଣେ
ବହୁତ ପୁରୁଣା ବହୁ ବର୍ଷ ତଳୁ ଏପ୍ରିଲ୍ ମାସରୁ
ଟେନିସ୍ ପଡ଼ିଆ ଘାରି ଝୁରୁଥିବା ଜହ୍ନର ଛାଇରୁ
ଚାଲି ଚାଲି ଆସୁଚି ମୁଁ
ସରିଥିବା ସେସନ୍‌ରୁ, ସରି ସରି ଆସୁଥିବା ବି. ଜେ. ବିର ଏପ୍ରିଲ
ତାତିକୁ ।
ଫାଟକ ସେପାଖ ରାସ୍ତା ସବୁଦିନ ଫାଟକ ସେପାଖେ
ଏପାଖେ ମୋ ସମୟର ଛୋଟ ଛୋଟ ଭଗ୍ନାଂଶ ସହିତ
ମୋ ସତ୍ତାରେ କଂକ୍ରିଟ୍.....ଏପ୍ରିଲ୍ ଖରାର ତାତି
ମେ, ଜୁନ୍, ଖରା ଛୁଟି
ଟାଇଫଏଡ୍ ତାତି ପରି ଅସରନ୍ତି ସମୟର
ଅନିଶ୍ଚିତ ବର୍ତ୍ତମାନ
ଭବିଷ୍ୟତ ବିହୀନ ଅତୀତ ।

□□

# ହାତ

କ୍ଲାସ୍‌ମେଟ୍ ଦୋସ୍ତ ମୋର
ତା ହାତ ତ ଥିବା କଥା ଅନ୍ୟ କେଉଁ ଲୋକର ପକେଟ୍‌ରେ
ଆଜି କିନ୍ତୁ ସକାଳର ସମାଜରେ ପ୍ରଥମ ପୃଷ୍ଠାରେ
ଛବି ତାର - ହାତ ତାର ନିଜ ପକେଟ୍‌ରେ ।

ଅତୀତରେ ହାତ ତାର ରହୁଥିଲା ବ୍ୟସ୍ତ କିନ୍ତୁ ସବୁଦିନେ ପ୍ରାୟ
ସବୁବେଳେ
ଇଉନିଅନ୍ ଭୋଟ୍ ପାଇଁ ବକ୍ତୃତା ଦେଲା ବେଳେ
ଅବା କାହା ପକେଟ୍‌ରୁ କଡ଼ାପାନ ସିଗାରେଟ୍ ଚାନ୍ଦା କଲା ବେଳେ
ହ୍ୟାମଲେଟ୍ ସଲିଲୋକି ଆବୃତ୍ତି କରିଲାବେଳେ
ଏମିତିକା ହାତ ତାର ବ୍ୟତିବ୍ୟସ୍ତ ରହୁଥିଲା ସବୁବେଳେ - ପ୍ରାୟ
ସବୁବେଳେ,

ଆଜି ତେଣୁ
ତା ହାତ ନ ଥିବା କଥା ସ୍ଥିର ହୋଇ ଏ ଛବିରେ
ତାର ନିଜ ଜ୍ୟାକେଟ୍ ପକେଟ୍‌ରେ ।

ସବୁ ଯୁକ୍ତିତର୍କଜ ତ ଅବସାନ ରାତିରେ ସେଦିନ
ସାମ୍ନାରେ ସ୍ୱାଧୀନତା
ଦିଲ୍ଲୀରେ ନେହେରୁ ଜିନ୍ନା ମାଉଣ୍ଟବ୍ୟାଟେନ୍
ଗାନ୍ଧି, ଆଜାଦ୍, ଲିଆକତ ଅଲ୍ଲୀ
ବିହାର ଓ ପଞ୍ଜାବର ଆକାଶ ଖୁଣ୍‌ରେ ଲାଲ୍.....
ଟେନିସ୍ ପଡ଼ିଆରେ
ସେଦିନ ରାତିରେ

ମୋ ଦୋସ୍ତର ହାତଥିଲା ପକ୍ଷାଘାତ ହେଲାପରି
ସ୍ଥିର ସ୍ତବ୍ଧ
ଟେନିସ୍ କୋଟ ଚଟାଣ ଉପରେ ।

ଆଜି କିନ୍ତୁ ସକାଳର ସମାଜରେ ଫଟୋ ତାର ପ୍ରଥମ ପୃଷ୍ଠାରେ
ମୁହଁରେ ବିସ୍ତୃତ ହସ
ଚାହାଣୀରେ
"ପ୍ରାଚୀନ ଏ ସଭ୍ୟତାର ପରମ୍ପରା ସଂସ୍କୃତି ଓ ମହାନ୍ ଐତିହ୍ୟ,"
ଭାଷଣରୁ ଭାଷଣକୁ
ସଭାରୁ ବିଧାନ ସଭା
ଲୋକସଭା, ରାଜ୍ୟସଭା ବ୍ୟାପି
ପକେଟ୍‌ରୁ ପକେଟ୍‌କୁ
ତା ହାତରେ, ପକେଟ୍‌ରେ
କାଗଜ କାଗଜ କେତେ କେତେ ଯେ କାଗଜ
ଜନ୍ମ ମୃତ୍ୟୁ ଯନ୍ତ୍ରଣାର ଜିଦ୍‌ଖୋର ସବୁ ପ୍ରଶ୍ନ ନେଇଁ
ହାତ ତାର ପକେଟ୍‌ରେ...ମାନ୍ୟବର ମନ୍ତ୍ରୀଙ୍କର
ମୋ ଦୋସ୍ତର ହାତ ।



# ଆର ଶତାବ୍ଦୀକୁ

ଆମ ଏ ସମୟର ଆଶ୍ଚର୍ଯ୍ୟ ଖବର ଯେତେ ଆଶ୍ଚର୍ଯ୍ୟ ଘଟଣା
ଯେତେବେଳେ ଲେଖାହେବ ଇତିହାସ ପୃଷ୍ଠାରେ
ଆର ଶତାବ୍ଦୀରେ
ପ୍ରାର୍ଥନା ସଭାର ଏକ ଶୀତ ଥଣ୍ଡା ଝାପ୍‌ସା ଆସରରେ
ସେ ଲୋକର ମୃତ୍ୟୁ ହେଲା ଆତତାୟୀ ଗୁଳିରେ କିପରି ।

ତା'ପରେ ତ ହତ୍ୟା ତାର ଚାଲିଥିଲା ବାରମ୍ବାର
ନିୟମିତ କାର୍ଯ୍ୟ-ସୂଚି ପରି
ପ୍ରତିଦିନ ପଞ୍ଜାବ, କାଶ୍ମୀର, ବହୁ ବହୁ ବିଭିନ୍ନ ପ୍ରାନ୍ତରେ
ପୃଥିବୀର ଭୀତତ୍ରସ୍ତ ଚକ୍ରାବର୍ତ୍ତ ଗତି
କିପରି ନିଶବଦ ଥିଲା ଆକସ୍ମିକ ଦୁର୍ଘଟଣା
ଆକସ୍ମିକ ମୃତ୍ୟୁର ଭୟରେ ।
ସେଦିନ ତା ପାଦଚିହ୍ନ ଥିବ ଯଦି ଫୁଲରେ ଫୁଲରେ
କଷି, କଢ଼, ବଉଳରେ ତା ଦେହର ମୃଦୁଗନ୍ଧ
ଫେରୁଥିବ ପ୍ରତିବର୍ଷ ବସନ୍ତରେ, ଆଷାଢ଼ର ଆକାଶରେ ଆସୁଥିବ
ତା କେଶର ନିଘଞ୍ଚ ପ୍ଲାବନ
ସେଦିନ ସେ ଥିବ ଯଦି ପୃଥିବୀର ଆବର୍ତ୍ତରେ
ଯକ୍ଷକନ୍ୟା ବିରହର ଗୀତ ।

ଆଜିର ଏ ଦ୍ୱିଧା ଭୟ ଆଶଙ୍କାର ଖବରକୁ ଡେଇଁ
ତା' ସତ୍ତାକୁ ଆଜି ଯାଉ ଗର୍ଭଗୃହ ସମାଧିର ଅନ୍ଧାରରୁ
କରୁଣା ଓ ବିଶ୍ୱାସର ଦୁଇଟି ଜ୍ୱଳନ୍ତ ଆଖି....
ଆମର ଏ ସମୟର ଏକମାତ୍ର ସାନ୍ତ୍ୱନା
ଓ ଏକମାତ୍ର ନିର୍ଭୟ ଆଶ୍ରୟ
ଆର ଶତାବ୍ଦୀକୁ ।

ଦଦ

# ମାଣିକେଶ୍ୱରୀ

ଉତ୍ତର ମେଘର ଜହ୍ନ ତୋ ହାତ ତ ପଦ୍ମଫୁଲ ପରି
ଉତ୍ତର ମେଘର ଜହ୍ନ ତୋ ଓଠ ତ ଫୁଲର ପାଖୁଡ଼ା
ସେ ଫୁଲ ପାଖୁଡ଼ା ଟାଣ ଲୁହାଠାରୁ
ସେ ଫୁଲ ପାଖୁଡ଼ା ଯଦି ଲାଗେ କେବେ ଇସ୍ପାତ୍ ଦେହରେ
ଇସ୍ପାତ୍ ନରମ ହୋଇ ଭାଙ୍ଗିଯାଏ ।

ଉତ୍ତରର ମେଘର ଜହ୍ନ
ତୋ କଳା ଆଖିର ଜ୍ୟୋତି
ଝଡୁ ଝଡୁ ଝାଡ଼ ଜଙ୍ଗଲରେ

ଉତ୍ତର ମେଘର ଜହ୍ନ
ତୋ ଖୋସାର ଝାଡ଼ ତଳୁ ଉଡ଼ିଯାଏ ହଳଦିବସନ୍ତ
ତୋ ନଖର ତୀକ୍ଷ୍ଣ ଶାଣ
ଟାଙ୍ଗି କଟୁରୀ ଦାଢ଼ରେ
ଉତ୍ତର ମେଘର ଜହ୍ନ
ତୋ କଳା ଆଖିର ତୀକ୍ଷ୍ଣ କଲ୍ୟାଣ ମୋ
ଦେହର ସତ୍ତାରେ ।

ଉତ୍ତର ମେଘର ଜହ୍ନ
ତୋ ଆଖିର କଜ୍ଜଳରୁ ଅନ୍ଧାର ଜମାଟ ବାନ୍ଧୁ
ବାଟ ଘାଟ ଝାଡ଼ ଜଙ୍ଗଲରେ
ଅନ୍ଧାର ଚିକ୍‌କଣ ହେଉ ଘାରି ମୋର ନଗ୍ନ ଚେତନାକୁ
ତୋ କଲ୍ୟାଣ ଆଶୀର୍ବାଦ ମୋର ବର୍ଚ୍ଛା ଛୁରି କଟୁରୀକୁ
ତୀକ୍ଷ୍ଣ କରୁ ତୀକ୍ଷ୍ଣ କରୁ
ତୋ ଜିଭ ନଖର ଲାଲ ଶୋଣିତ ରକ୍ତରେ ।

□□

# ପିଣ୍ଟୁ ପାଇଁ ଗୋଟିଏ କବିତା

ଜୀବନରେ ଭୁଲ ହୁଏ ଠିକ୍ ବି ତ ହୁଏ
ଭୁଲ୍ ଠିକ୍ ବିଚାରର କିନ୍ତୁ କିଛି ମାପ ନାହିଁ ରେଫରେନ୍ସ ନାହିଁ
ସମୟର ହାତ ବି ତ ଭୁଲ୍ ଠିକ୍ ବିଚାରରେ ହାତ ତାର ଦିଏ
ମୋ ସମୟ ଭୁଲ୍ ଠିକ୍ ତୋର ଭୁଲ୍ ଠିକ୍ ଠାରୁ ବିଲ୍‌କୁଲ ଅଲଗା ।

ପୁଣି କେତେ ବର୍ଷପରେ
କେତେ ନୂଆ ଭୁଲ୍ ଠିକ୍ ଆସି ଦେଖା ଦବ
ତୁ ଦେଖିବୁ ହଠାତ୍ ତୋର ଭୁଲ୍ ଠିକ୍ ବେଖାପ ପୁରୁଣା
ତେଣୁ ଆଜି ବିଚାରରେ ପୂର୍ଣ୍ଣଚ୍ଛେଦ କେଉଁଠାରେ
ସିଦ୍ଧାନ୍ତ କେଉଁଠି ?



# କେତେ ସ୍ୱପ୍ନ ପରେ

ସେ ଦୃଷ୍ଟିର ଦିଗନ୍ତ ବା କେତେ ଦୂର
କେଉଁ ଗ୍ରହ ଗ୍ରହାନ୍ତର କେଉଁ ବିଲୟରେ
ଆମର ସୀମିତ ସତ୍ତା କାହିଁକି ବା ଅନ୍ୱେଷଣ କରି ସେ ଦିଗନ୍ତ
ସମୟର ଆରମ୍ଭରୁ ଶାସ୍ତ୍ର ପୋଥି ଗ୍ରଂଥ କେତେ ଭଜନ ସଂଗୀତ
କ୍ଲାନ୍ତ ହୁଏ ଶ୍ୱାସରୁଦ୍ଧ କ୍ୟାସେଟ୍‌ରେ ପତ୍ରିକାରେ ବହିର ପୃଷ୍ଠାରେ
ଜମି ଜମି ଆସୁଥିବା ଅନ୍ଧାରରୁ ଅନ୍ଧାର ଭିତରେ ।

ସେ ଦୃଷ୍ଟିର ଜ୍ୟୋତ୍ସ୍ନା ଯାଏ ନିର୍ଜନ ନଈର ସୁଅ ଶିଉଳି ଉପରେ
ବସନ୍ତ ପବନ ପରି ଅଗଣିତ ନକ୍ଷତ୍ରର ଛାଇ ଆଉ ଛାୟାପଥ ଧରି
ଆମର ଦେହ ଓ ଆତ୍ମା ଗୋପନ ସତ୍ତାରେ
ସେ ଆଖିର ଜ୍ୟୋତ୍ସ୍ନା ଆସେ ସ୍ୱପ୍ନର ସଂବାଦ ନେଇ
ନିସ୍ତେଜ ନିଦର ଝାପ୍‌ସା ସ୍ତବଧ ମୁହୂର୍ତ୍ତରେ ।

ସେତେବେଳେ ସବୁ ଦୁଃଖ ସଂଘର୍ଷ ଓ ଯନ୍ତ୍ରଣାର ସ୍ମୃତି ରହେ ନାହିଁ
ଏ ପୃଥିବୀ ରୂପପାଏ କେତେ ରଂଗ ମହକ ଓ କେତେ ଫୁଲ
କେତେ ଆକାଶରେ ।
ସେ ଜ୍ୟୋତ୍ସ୍ନାର ସେ ଆକାଶ ଅନନ୍ତ ଯାତ୍ରାର ନୀଳ ସଂଭାବନା ଆଣେ
ଅନନ୍ତ ନିଦ୍ରାର ପରେ ଅନନ୍ତ ଗତିରେ
ସେ ଜ୍ୟୋତ୍ସ୍ନାର ଅସରନ୍ତି ସ୍ନେହ ।
ମୋ ଯାତ୍ରାର ଆରମ୍ଭ ବା କେଉଁ ଦୂର ବିସ୍ମୃତ ଅତୀତ
ଜ୍ୟୋତ୍ସ୍ନାର ଏ ଲହରୀରେ ମୋ ଗତିର ବିଲୟ ବା
କେତେ ନିଦ୍ରା କେତେ ସ୍ୱପ୍ନ ପରେ ?

□□

# ମୋର ଠିକ୍ ମନେ ନାହିଁ

କେତେ ଯୁଗ କେତେ କାଳ ସମୟର କେଉଁ ମାପ କାଠି
କେତେ ମୃତ୍ୟୁ, ଜନ୍ମ, କ୍ଷୟ, କେତେ କ୍ଳାନ୍ତ ଶତାବ୍ଦିର
ବିଲୁପ୍ତି ଓ ପରିବର୍ତ୍ତନରେ
ମୋର ଏହି ଯାଯାବର ସତ୍ତାର ଆରମ୍ଭ ହେଲା
ମୋର ଠିକ୍ ମନେ ନାହିଁ ସେ ତାରିଖ ସେ ପୃଥିବୀ
ରାଜା ବା ସାମ୍ରାଜ୍ୟ କିଛି, କୌଣସି ଘଟଣା ଅବା
ଅନ୍ୟ କିଛି ମୋ ସତ୍ତାର ଇତିହାସ ତଳେ ।

ତଥାପି ସେଦିନ ସଂଧ୍ୟା
କେତେ ଦିଗ ଦିଗନ୍ତରୁ କେତେ ସୀମା କେତେ ଆକାଶରୁ
ଯୋଜନ ଯୋଜନ କେତେ ସମୁଦ୍ରର କେତେ ସୁଅ ଲହରୀ ଉପରୁ
ହଠାତ୍ ଆସିଲା ମେଘ- ନିଘଂଚ ନିରନ୍ଧ୍ର ବଣ ଦିଗ୍‌ବଳୟ ଉପରୁ ହଠାତ୍
ଯଦି କେଉଁ ମ୍ୟାଜିକ୍‌ରେ ହଠାତ୍ ଆରମ୍ଭ କରେ ଚାଲିବା ଜୋରରେ
ତୁମର ଆଡ଼କୁ ସିଧା, ଠିକ୍ ସେହିପରି ସେଦିନ ମେଘର ସେହି ଘଂଚ ଆଉ
ବିରାଟ ଅଂଧାର
ହଠାତ୍ ଆସିଲା ମାଡି ଘୋଡ଼ାଇ ଆମର ଗାଆଁ, କ୍ଷେତ ବାରି ବଣ ଓ ପାହାଡ଼ ।

ବର୍ଷାର ଆରମ୍ଭ.... ବର୍ଷା ଋତୁ ଦୀର୍ଘ ଚାରି ମାସ
ଦୀର୍ଘ କେତେ ଅସରନ୍ତି ଅବିଶ୍ରାନ୍ତ ଦିନ
ଯେତେବେଳେ ବନ୍ୟା ଆସେ ଗଙ୍ଗାରେ ଓ ଯମୁନାରେ
ଯେତେବେଳେ କ୍ଷେତବାରି ବାଟଘାଟ ଭରି ଯାଏ ଗୁଳ୍ମ ଲତା ଅରମା ଘାସରେ
ଯେତେବେଳେ ସ୍କୁଲ ଛୁଟି, ବନ୍ଦ ସବୁ ବ୍ୟବସାୟ, ପୋଲାଙ୍ଗ ତେଲର ଦୀପ
ଯେତେବେଳେ ଭାରି ଭୟାତୁର... ଆଉ ଝଡ
ବେଳେ ବେଳେ ଅକସ୍ମାତ ଆସେ ଥରାଇ ପଞ୍ଜରା ହାଡ଼ ଗାଆଁ ସହରର...

ସେ କାଳର ବର୍ଷା ଋତୁ, ଗାଢ଼ ନୀଳ, ସୁନ୍ଦର ଓ ଅକସ୍ମାତ ପୁଣି ଭୟଙ୍କର
ସେ କାଳର ବର୍ଷା ଋତୁ ଅସରନ୍ତି ଦୀର୍ଘ ଦିନ ଦୀର୍ଘ ଚାରି ମାସ
ସେ ଦିନର ବର୍ଷା ସଂଧ୍ୟା... ହଠାତ୍ ଆସିଲା ମେଘ...
ଆଉ ଆମ ଘରେ ତିନିଜଣ ଅତିଥି ବ୍ରାହ୍ମଣ ।



# ଖୋଲା କବାଟ

ପ୍ରାତ୍ୟହିକ ଶାସନରେ ମୋ ନିଜକୁ ବାଂଧିବାରେ
ଆଉ, ଛୁଟିର ଦୂର୍ଗମ ଠାରୁ ମୋ ନିଜର ମୁକ୍ତି ପାଇଁ
ମୁଁ କେବଳ ପାଇଥିଲି
ଗୋଟିଏ ଉନ୍ମୁକ୍ତ ଦ୍ୱାର
ସକାଳର ବିସ୍ମୟ ଓ ସଂଧ୍ୟାର ସଂଶୟ ପରେ ଖୋଲା ରଖିବାକୁ,
ତା'ଠାରୁ ବା ବେଶୀ ମୋର ହୃଦୟର ଦରକାର କଣ ଥିଲା
ମୁଁ ଜାଣି ନ ଥିଲି -

ମୋ ନିଜ ରାତିର ବୃତ୍ତ ବଂଧନୀରେ
ମୁଁ ଆଜି ପାଏନା ଖୋଜି କାହିଁକି ବା
ସେ ଖୋଲା କବାଟ ?
ସେ କବାଟ ଆଜି କଣ ଫାଶି କାନ୍ଥ ସବୁ
ଯାଇଛି ବହୁତ ବ୍ୟାପି ଅନେକ ଅନେକ -
ସେ କବାଟ ବନ୍ଦ କଣ ଆଜି ?
ସେ କବାଟ ଖୋଲା ଆଜି କେଉଁଠାରେ ?
ସେ କ'ଣ ମୋ ଧୈର୍ଯ୍ୟ ପାଖେ ହାରିଯାଇ
ଆଜି ଲୁପ୍ତ ନିହାତି ନିଖୋଜ ?

ମୁଁ ଜାଣେନା କାହିଁକି ବା ଏ ଏକ ସଂଶୟ
ମୋ ମନ ଭିତରେ ଆଜି ଧୂଆଁ ପରି
କାନ୍ଥ ଆଉ କବାଟର
ଜୀବନ ଓ ଝରକାର ଅନୁପାତ ବୋଧେ
ବୁଝିବାକୁ ହେବ ମତେ ଅଙ୍କ କଷି ନୂଆ ହିସାବରେ ।

□□

# ଆପଣ ଆସନ୍ତୁ ଫେରି

ଅଂଧାରରେ ଯେତେବେଳେ
ଯିବା ବାଟ ନିଖୋଜ ନିଶ୍ଚିହ୍ନ
ଯେତେବେଳେ ପାଦ ଶବ୍ଦ
ଶୁଭେନାହିଁ ପଛରେ ବା ଆଗରେ କାହାର
ଯେତେବେଳେ ନିର୍ଜ୍ଜନତା
ମିଶିହୁଏ ଏକାକାର ଭୟ ଆଶଙ୍କାରେ
ସେତେବେଳେ ଆପଣଙ୍କ ହସ ଆସେ
ଦିଗନ୍ତ ଦେହରୁ
ପୂର୍ଣ୍ଣମୀର ଚନ୍ଦ୍ର ହୋଇ ଯିବାର ବିଶ୍ୱାସ ଆଣି
ହଜିଥିବା ବାଟର ସଂଧାନ ।
ସେ ବାଟତ ଅସରନ୍ତି କେଉଁ ଦୂର
ଦୂର ଦିଗନ୍ତର
ଆପଣଙ୍କ ହସ କଣ ଚିରନ୍ତନ
ତା ସୀମା ପରିଧି ?
ଏ ମୋର ଅଂଧାର ଘୋର ନିର୍ଜ୍ଜନତା ଘାରି
ଆପଣ ଆସନ୍ତୁ ଫେରି ମୋ ପାଖକୁ
ଛିନ୍ନ କରି ଏ ମାଂସର ମହାପାପ
ଏହି ମହା ବ୍ୟାଧି ।



# ରକ୍ତ ପାଖୁଡ଼ା

ମୋତି ନୁହେଁ ମୁକ୍ତା ନୁହେ
ନୁହେଁ ନେଳି କାଗଜରେ ସମୁଦ୍ରର ପୂର୍ଣ୍ଣିମା ଜୁଆର
ନାଗ କନ୍ୟା ଉଲୁପିର
ଶିଉଳି ଶାମୁକା ସାପ ପୋହଳାର ରୂପକଥା ନୁହେଁ
ନୁହେଁ ନେଳି କାଗଜର ସୀମିତ ଓ ଶୀର୍ଣ୍ଣ ଆକାଶରେ
ସ୍ତିମିତ ତାରାର ଲୁହ,
ହେମନ୍ତର ନମ୍ର ରାତି ନିଦ ଭରା ଶିଥିଳ ବେଣୀରୁ
ଛଡ଼ା ଫୁଲ ପାଖୁଡ଼ାର ବ୍ୟଥା ଧରି
ନୁହେଁ ଦେହ ଲାବଣ୍ୟବତୀର...

ଫୁଲର ବି ଗଂଧ ନୁହେଁ... ହୁଏତ ଏ ପୃଥିବୀର ବସନ୍ତ ଋତୁର
ସବୁ ଫୁଲ ନିର୍ଯ୍ୟାସର ଗନ୍ଧ ଆଉ ରକ୍ତ ପାଖୁଡ଼ାର
(ଫୁଲର ଯଦିବା ରକ୍ତ ତାତି ଆଉ କାମନା ବା ଥାଏ)
ଫିକା ନେଳି କାଗଜର ସୀମିତ ଓ ଶୀର୍ଣ୍ଣ ଆକାଶରେ ।

□□

# ଅପେକ୍ଷା

ଶ୍ରାବଣର ଅବସନ୍ନ କ୍ଳାନ୍ତ ସଂଧ୍ୟା
ଗରମ ଓ ଗୁଳୁଗୁଳି ଝାଳ ଆଉ ଘିମିରିର ପିନ୍ କଣ୍ଟା
ଦେହ ସାରା
ପାଉଁଶ ରଂଗର ମେଘ ଆକାଶର ଏ ପାରି ସେପାରି
ଗୁମ୍ ସୁମ୍ ଚାରିଆଡ଼
ନିର୍ବାକ୍ ନିଶ୍ଚଳ ସ୍ଥିର କାହାର ବା ଉତ୍ସୁକ ଅପେକ୍ଷା !!

ବହୁତ ଯୁଗରୁ ଏହି ଅପେକ୍ଷା ତ
ବେଥ୍‌ଲେମ୍ ଆକାଶରେ ଖସୁଥିବା ତାରାର ଅପେକ୍ଷା
କପିଳବାସ୍ତୁର ଅବା ରାତି ଆକାଶରୁ
ଉଜ୍ଜ୍ୱଳ ସେ ଏକ ଶ୍ୱେତ ହସ୍ତିର ଅପେକ୍ଷା,
ଏତେ ସବୁ ଆବିର୍ଭାବ ତିରୋଧାନ ପରେ
ଆଉ ଏକ ଅପେକ୍ଷାର ଆବିର୍ଭାବ ପୁଣି କହ କେବେ ?



# ସେ ଆଖି ତ

ସେ ଆଖିର କଜ୍ଜଳରେ ଚିତ୍ରିତ ଏ ଅମାବାସ୍ୟା ରାତି
ସେ ଆଖିର ସମ୍ମୋହନ - ଅନ୍ଧାରର ଆକାଶ ପୃଥିବୀ
ସତ୍ତା ମୋର ଲୋପ ପାଏ ମୋ ଠିକଣା ମୋର ପରିଚୟ
ପ୍ରଥମରୁ ଆଜିଯାଏ
ମୁଁ ଯେତେ ଚାଲିଛି ବାଟ କ୍ଳାନ୍ତ ଦେହ କ୍ଳାନ୍ତ ସ୍ୱପ୍ନ ନେଇ
ସେ ଆଖି ମୋ ପଛେ ପଛେ
ମୋ ଦୃଷ୍ଟିର ସୀମାନ୍ତ ଓ ଦିଗ୍‌ବଳୟ ଘେରି ।

ଆଜି ତେଣୁ ଅନ୍ଧାରରେ ସତ୍ତା ମୋର ବିଲୁପ୍ତ ନିଖୋଜ
ସେ ଆଖି ତ ମୋ ସାମ୍ନାରେ ଦି ପାଖରେ କେତେବେଳେ
ସେ ଆଖି ତ ଭୟ ଆଣେ ଅନୁଚ୍ଚାରିତ ଶଙ୍କା
ସେ ଆଖି ତ କ୍ୟାମେରାର ଆଖି ପରି ଚାରିପାଖେ ମୋର
ମୋ ମନର ମୋ ଦେହର ସ୍ନାୟୁ ଇନ୍ଦ୍ରିୟର
ତାର ସବୁ ନଗ୍ନ ରୂପ ଲାଗେ ମତେ ରହିଯାଏ ସେ ଆଖି ଭିତରେ
ସେ ଆଖିରୁ ମୁକ୍ତି ନାହିଁ
ଭୟରେ ଓ ବିପଦରେ
ସେ ଆଖିରୁ ଆସେ ପୁଣି କଲ୍ୟାଣ ଓ ସ୍ନେହର ଚନ୍ଦନ ।

ସେ ଆଖି ତ ଜଣାଯାଏ ବେଳେ ବେଳେ ଚାର୍‌ଟାର୍ ଟାର୍ଗେଟ ପରି
ସବୁଦିନ ସବୁବେଳେ ସେ ଆଖି ତ ସମସ୍ତଙ୍କ ନିଶାଣ ସାମ୍ନାରେ
ଝୁଲଣ ଚନ୍ଦନ ଯାତ୍ରା ରଥଯାତ୍ରା ସବୁ ବେଶ ସବୁ ମୁହୂର୍ତ୍ତରେ
ନିର୍ବିକାର ସେ ଆଖିର ଯନ୍ତ୍ରଣାରେ
ମଂତ୍ରି, ସେଠ୍, ସାଂସଦ ଓ ଏମ୍ ଏଲ୍ ଏ

ଯେତେ ନର ଯେତେ ନରପତି
ସମସ୍ତଙ୍କ ନିଶାଣର ଲାଖ ବାଜେ ଦିନରାତି ଅହର୍ନିଶ
ଛୁଟି ନାହିଁ ପରିତ୍ରାଣ ନାହିଁ
ଆମେ ସବୁ ଅନ୍ୟ ଯେତେ ଚାହିଁ ରହୁ ସମ୍ମୋହିତ ସେ ଆଖିର
ଡୋଳାକୁ ଯେହେତୁ
ଗୁଳି ବିଦ୍ଧ ସେ ଆଖିରେ ଆମର ଜମାଟ ଅଶ୍ରୁ
ଜୟ ହେଉ ତାର ଜୟ ହେଉ ।

ଚିତ୍ରିତ ଏ ଅମାବାସ୍ୟା ଅଂଧାରରେ ସେ ଆଖିର
ସେ ଆଖିର କଜ୍ଜ୍ୱଳର ଦାଗ
ମୋ ସତ୍ତାରେ ମୋର ଦେହ ମନ ଓ ଆତ୍ମାରେ
ମତେ ଲାଗେ ଆଜି ତେଣୁ ନିଶ୍ଚିହ୍ନ ନିରୋଗ ହୋଇ ଯିବା ପରି
ନିଖୋଜ ନିବୁଜ ଏଂହି ଅଂଧାରରେ
ସେ ଆଖିର ରକ୍ତ ବିନ୍ଦୁ ପରି ।



# ମୋ ବୁଢ଼ିମାଆର ରାତି

ଚିଠି ଲେଖା କାଗଜରେ ଯାଗା ନାହିଁ, ରହିଗଲା ଅକୁହା ଅନେକ
ଆଜିର ମୋ ଛୋଟ ଗପ ରହିଗଲା, ସରିଗଲା ସମୟ... ଯଦିଚ
ଆମର ଏ ବୁଢ଼ିମାଆ, ଏ ପୃଥିବୀ ବହୁତ ଦିନର
ଏ ରାତିରେ କଥା କହେ, ଅସରନ୍ତି କଥା କେତେ
ଇତିହାସ ବହୁତ ଯୁଗର

ସେଥିପାଇଁ ଏ ରାତିରେ ପାରି ହୋଇ କେତେ ଢେଉ
ଶିଉଳି ଓ କେତେ ଘାସ ଶାମୁକା ଓ ସୁଅ କେତେ...
ଛୁଇଁ ତାରା ବହୁତ ଆକାଶ
ତା' ଆଖିରେ ନିଦ ଆସୁ ତା ଓଠର ପାଖୁଡ଼ା ଭିତରେ
ଶୋଇପଡୁ ଏ ଅଂଧାର, ଏ ରାତିର ଯେତେ ତାରା
ଯେତେ ଛାଇ ଯେତେ ମେଘ ସମୟର ଯେତେ ଲୁହ
ବିଜନ ବେଦନାତୁର ଆଷାଢ଼ର ନିଃସଙ୍ଗ ଆକାଶ ।

ଜୀବନରେ ଦୁଃଖ ଆସେ, ଦୁଃଖ ଆଣେ କ୍ଲାନ୍ତି ପୁଣି, କ୍ଲାନ୍ତି ଆଣେ
କେତେ ତାରା
କେତେ ଛିନ୍ନ ମେଘ
ଆଉ ଭଲ ପାଇବାରେ ସ୍ମୃତି ଓ ସମୟ ଆସେ
ସମୟ ତା' ପରେ ଯାଏ ସାଉଁଟି ସାଉଁଟି ସବୁ ଝଡ଼ା ପତ୍ର ଯେତେ ଝଡ଼ା ଫୁଲ
ବିକ୍ଷୋଭିତ ଢେଉ ଯେତେ ଶାନ୍ତ ହୁଏ ଶୋଇପଡ଼େ
ଏ ଦେହର ଆଷାଢ଼ ଓ ଅପମାନ ବର୍ଷା ଆଉ ମେଘ
ଏ ମନର କ୍ଲାନ୍ତି ଆଉ ଗ୍ଲାନି ପୁଣି, ଦାରିଦ୍ର୍ୟ ଓ ଦୁଃଖ, ଶୋକ ରୋଗ ।

ଆଷାଢ଼ର ମେଘ ଆଉ ମ୍ଳାନ ଜହ୍ନ ଆଜି ତେଣୁ ନଇଁଆସୁ ତା ଆଖି ପତାରେ
ଚିଠି ମୋର ସରିଯାଉ ଯଦିଚ ବହୁତ କଥା ରହିଗଲା ଅକୁହା ଏ ପାଖେ

ଆମର ଏ ବୁଢ଼ିମାଆ ଏ ପୃଥିବୀ ବହୁତ ଦିନର
ତଥାପି ତ କଥା କହେ ବହୁତ ଯୁଗର କଥା
ଏହି ରାତି ଆଷାଢ଼ର ବିରହ ଓ ବେଦନା ଆତୁର ।

ତା' ଆଖିରେ ଆଜି ତେଣୁ ନିଦ ଆସୁ ଜହ୍ନ ଆସୁ ଆଷାଢ଼ର
ନିରୁଦ୍‌ବେଗ ମେଘ
ତା' ଆଖିରେ ସ୍ୱପ୍ନ ଆସୁ, ବହୁତ ବହୁତ ଯୁଗ
ଲାବଣ୍ୟବତୀର ସ୍ୱପ୍ନ ସ୍ୱପ୍ନ ଦୂର ମାଳିନୀ ନଈର
ମୁଁ ଆଜି ପଠାଏ ତାକୁ ଏ ଆଷାଢ଼ ଏ ଆକାଶ
ମୋ ବୁଢ଼ି ମାଆର ରାତି
ମୋ ଦେହର ଏ ଭଲପାଇବା ।



# ଜଗନ୍ନାଥ ସ୍ୱାମୀ

ଅଂଧାରରେ ଯିବା ବାଟ ଯେତେବେଳେ ନିଖୋଜ ନିଶ୍ଚିହ୍ନ
ଅକାଳ ଓ ଅନାବୃଷ୍ଟି
ଯୁଦ୍ଧ ଭୟ ରକ୍ତପାତ, ମହାମାରୀ ବନ୍ୟା ବିପ୍ଲୁପାତରେ
ଯୋଜନା କମିଟି ସବୁ ଫେଲ୍ ମାରେ ଯେତେବେଳେ-
ସେତେବେଳେ ଦୟା କ୍ଷମା ସାହସ ଓ ସମବେଦନାର
ଅଦମ୍ୟ ତୋଫାନ ଆସେ
କୁରୁକ୍ଷେତ୍ର ପରେ ଅବା ନାଗାସାକୀ ହିରୋସିମା ପରେ
ସମୟର ଆରମ୍ଭରୁ ଆଜି ଯାଏ
କହ କହ କେଉଁ କାରଣରୁ ?

ତୁମ ପାଇଁ ଆମ ପାଇଁ ସମୟ ତ ଅତି ବ୍ୟକ୍ତିଗତ
ସମୟ ବି ସମାଜର, ରାଷ୍ଟ୍ରର, ଭୌଗୋଳିକ ପୃଥିବୀ ସତ୍ତାର
ସମୟ ବି ସୌର ମଣ୍ଡଳର,
ସମୟ ଯଦିବା ଅଟେ ଗତିବାନ ନଦୀ ପରି
ତା' ହେଲେ ଉତ୍ପତ୍ତି ତାର କେଉଁଠାରୁ
ଗତି ତାର କେଉଁଠାକୁ କେଉଁ ବିଲୟକୁ ?

ମତେ ଲାଗେ ବେଳେ ବେଳେ ସମୟ ତ ଗତିହୀନ ସ୍ଥିତିବାନ
ଗର୍ଭଗୃହ ସମାଧିର ଅଂଧାରରେ ସେ ଦୃଷ୍ଟିର ଅନନ୍ତ ସୀମାରେ
ସମୟ ନିଶ୍ଚଳ ସ୍ଥିର ଗତିହୀନ ପ୍ରଶାନ୍ତ ନୀରବ
ସମୟ ଓ ଶୂନ୍ୟତାର ଦୁଇଟି ସମାନ୍ତ ରେଖା
ଅନନ୍ତ ବ୍ୟାପ୍ତିରୁ ଆସି ପାଏ ତାର ଯୁକ୍ତ ବିନ୍ଦୁ
ଚିରନ୍ତନ କଲ୍ୟାଣ ଓ ବେଦନାର ସେ ଦୁଇଟି ଜ୍ୱଳନ୍ତ ଆଖିରେ ।

ପପ

# ବାରିପଦା ସ୍କୁଲ

ସେ ତ ସେଠି ଠିକ୍ ଥିବ
ଫୁଲର କେସର ତାର ଦେହସାରା
ବହୁତ ଆଖିର ତାର ଗାଢ଼ କଳା ବହୁତ ଭଅଁର
କୁରେଇ ଫୁଲର ଧଳା କେସରରେ ଖୋଜୁଥିବେ
ଏବେ ସୁଦ୍ଧା ଆସନ୍ତା ରାତିର ସ୍ୱପ୍ନ
ମହୁଲ ଫୁଲର ବାସ୍ନା ଘାରିଥିବ ଚାରିପାଖେ
ସମୟର ସେହି ଭଗ୍ନାଂଶରେ,

ଯଦିବା ଆଜି ତ ତା'ର ଅନ୍ୟ ନାମ ଅନ୍ୟ ପରିଚୟ

ମୁଁ କିନ୍ତୁ ନିସ୍ପୃହ ଏଠି ଏତେ ଦିନ ଏତେ ବାଟ ପରେ
ଏଠି ଗଛ ଗହଳରେ କୁରେଇ ଫୁଲ ତ ନାହିଁ
ବର୍ଷା ଏଠି କାହିଁ ?
ମହୁଲ ଫୁଲର ବାସ୍ନା ଖଟି ବୋତଲରେ

ମୁଁ ଯଦି ଆଜି ବା ଚାହେଁ ଫେରିବାକୁ ସେହି ବର୍ଷା
କୁରେଇ ଫୁଲର ମେଘ
ପଳାସ ଫୁଲର ଲାଲ୍ ଫଗୁଣକୁ
ମହୁଲ ଫୁଲର ବାସ୍ନା, ନାଗେଶ୍ୱର ନିଦ ଭିତରକୁ...

କିନ୍ତୁ ଏତେ ବାଟ ପରେ ଚାଲି ଚାଲି ସମୟର ଉଜାଣିରେ
ପଛକୁ ଫେରିବା !
କିନ୍ତୁ ତ ମୋ ମନର ଫେରିବାର ଏହି ବାଟ ମୋଟେ

ସଫା ନୁହେଁ
ମୋ ଚାଳିଶା ଚଷମାର ଧୂଆଁ ଘେରା ଦିଗ୍‌ବଳୟ ପରି
ସ୍ମୃତିର ପେରିବା ବାଟ ବହୁତ ଝାପ୍‌ସା ।
ମୋ ନିର୍ଜନ ମୁହୂର୍ତ୍ତରେ ସମୟର ହଜି ଥିବା
ସେ ଭଗ୍ନାଂଶ ଆଜି
ହଠାତ୍ ବା ଦେହ ଧରେ ରୂପ ଧରେ ବାସ୍ତବତା ପରି
ବିସ୍ମୃତ ବିଗତ ଦୂର ନୂଆ ପାଠ ପଢ଼ାର ପୃଥିବୀ ।

ଫୁଲର କେସର ବୋଲି ସାରା ଦେହ
ଗାଢ଼ କଳା ଆଖିର ଭଅଁର କେତେ
କୁରେଇ ଫୁଲର ଧଳା କେଶରରେ ଖୋଜି ଖୋଜି ମହୁ
ମହୁଲ ଫୁଲର ବାସ୍ନା ଘାରିଥିବ ଚାରିପାଖ
ସେ ଦେହର କଳା ମେଘ ତଳେ ।

ମୁଁ କିନ୍ତୁ ନିସ୍ପୃହ ଏଠି ଏତେ ଦୂର ଏତେ ବାଟ ପରେ
ଏଠି ଗଛ ଗହଳରେ ବର୍ଷା ନାହିଁ
କୁରେଇ ଫୁଲ ବା କାହିଁ ?
ମହୁଲ ଫୁଲର ବାସ୍ନା ଏଠି ନାହିଁ
ଏଠି ଇଟା କଂକ୍ରିଟରେ ସ୍ମୃତି ତାର ଫଟୋଗ୍ରାଫ୍ କାହିଁ ?

ମୁଁ ହୁଏତ ଚାହେଁ ପୁଣି ଫେରିବାକୁ
କୁରେଇ ଫୁଲର ଧଳା ପାଖୁଡ଼ାର ସ୍ୱପ୍ନ ଭିତରକୁ
ପଳାସ ଫୁଲରେ ଲାଲ୍ ଫଗୁଣରେ
ମହୁଲ ଫୁଲର ବାସ୍ନା ନିଦ ଭିତରକୁ ।



# ସକାଳ କୁହୁଡ଼ି

ସକାଳ କୁହୁଡ଼ି ଗଲା ପାରି ହୋଇ ପଡ଼ିଆର ତାରବାଡ଼
ପାଣିଟ୍ୟାଙ୍କ୍
ସେ ପାଖର କୋଠା
ଚୁପ୍‌ଚାପ୍ ପଡ଼ିଆରେ ଆସିଲା ତାପରେ ଖରା
ଶିଶୁର ମୁହଁର ସ୍ୱଚ୍ଛ ହସ ପରି ନିର୍ବିକାର ମସୃଣ ସତେଜ
ମୋ ହାତର ପାପୁଲିରେ ସେହି ଖରା ସମୟର ପୁନର୍ଜନ୍ମ ପରି

ଏହି ସୂକ୍ଷ୍ମ ନିମନ୍ତ୍ରଣ କେଉଁ ଉତ୍‌ସବକୁ ?
ସବୁ ତ ଉସବ ମୋର ଜୀବନର ଅତୀତରେ
ଜଣାଯାଏ ସବୁ ଆଜି ଯାଇଚି ଉଜୁଡ଼ି
ଆଜି ସବୁ ଜଣାଯାଏ ସବୁ ନିରର୍ଥକ
ତଥାପି ଏ ମୂହୂର୍ତ୍ତରେ ମୋର ହାତ ପାପୁଲିର
ଖରାର ଉଷ୍ଣମ ସ୍ପର୍ଶ
ମତେ ଲାଗେ ମୋ ସତ୍ତାର ପୂନର୍ଜନ୍ମ ପରି

ନିର୍ବାପିତ ଏ ଖରାର ପ୍ରାଣହୀନ ନିଶ୍ଚଳ ମାଟିରେ
ଏ ଖରା ତ କରିଥିଲା କେବେ ଥରେ ପ୍ରାଣର ସଞ୍ଚାର
ତା ପରେ ତ ଗଛ ଲତା ଗୁଳ୍ମ, ବଣ ପାହାଡ଼ ଓ ନଈ
ଆଦିଗନ୍ତ ସମୁଦ୍ରର ଉଦ୍‌ବେଳ ତରଙ୍ଗ ଗତି
ରକ୍ତ ମାଂସ ପିଣ୍ଡୁଳାରେ ହାତ ପାଦ ଦାନ୍ତ ନଖ
ଭୋକ ଓ ଶୋଷର ତିକ୍ତ ସଂଘର୍ଷରେ ଫୁଟିଥିଲା ଚମ୍ପାଫୁଲ ।

□□

# ଯାତ୍ରା

ବାଟ ତ ନିର୍ଜନ ରହେ ସବୁବେଳେ
ଯଦିଚ ବା ଅହରହ ଯାତାୟାତ ବହୁତ ଛାଇର
ବାଟ ତ ନିସ୍ତବ୍ଧ ସ୍ଥିର ଗତିହୀନ
ଯଦିଚ ବା ପାଦଶବ୍ଦ ବହୁତ ଛାଇର ଶୁଭେ
ଚୁପ୍ ଚୁପ୍ ବହୁତ କଥାର
ତଥାପି ଏ ବାଟ ସ୍ଥିର ଗତିହୀନ ନୀରବ ନିର୍ଜନ

ଏ ବାଟର ଅନ୍ୟ ଚେହେରାରେ
ରେସ୍ତରାଁ ହୋଟେଲର ଅର୍କେଷ୍ଟ୍ରା ବାଜାରେ
ନିଷ୍ଠୁର ଲଙ୍ଗଳ ମୁଠା ଭଙ୍ଗା ମାଟି ଯନ୍ତ୍ରଣାରେ ଧାନ ମୁଗ ବିରିର ଆବାଦ
ପ୍ରଣୟ ବ୍ୟଥିତ ସ୍ୱପ୍ନ ଦେହ ଓ କବିତା
ବହୁ ପ୍ରଶ୍ନ ପ୍ରୟାସ ଓ ସଂଘର୍ଷ ଓ ଅନ୍ତର୍ଦାହ ଧରି
ଖୋଜି ଖୋଜି ଚାଲିବାର ଅଦମ୍ୟ ନିଷ୍ଠୁର ଶୋଷ
ଏ ବାଟର ଚେହେରାର ଅନ୍ୟ ଦୃଶ୍ୟାନ୍ତର
ତଥାପି ଏ ବାଟ ରହେ ସବୁବେଳେ ଗତିହୀନ  ନିର୍ଜନ ନିଶ୍ବଦ

ମହାପ୍ରଭୁ
ଯୋଜନ ଯୋଜନ ଏତେ ପଥଶ୍ରମ ଯନ୍ତ୍ରଣା ଜନିତ କ୍ଳାନ୍ତି
ଆଜି ଯଦି ଶାନ୍ତ ହୁଏ ଏ ପ୍ରାଚୀନ ଅଧିତ୍ୱର ଶୀତଳ ଛାଇରେ
ବ୍ୟଥା ଓ ଯନ୍ତ୍ରଣା ପାଏ ଉପସମ
ରକ୍ତ ମାଂସ ଏ ଦେହରେ
ନିଷ୍ଠୁର ରତୁର ତିକ୍ତ ଉପଭୋଗ ଖରା ବର୍ଷ ଶୀତର ସ୍ମୃତିରୁ
ଏହି ଅନ୍ତରାତ୍ମା ତଳେ ଜମାଟ ନିସ୍ତଦ୍ଧ ହୋଇ ରହିଥିବା

ଅଶାନ୍ତ ମେଘର ଏହି ଅତ୍ୟାଚାର ଏହି ଅନ୍ୱେଷଣ
ଆପଣଙ୍କ ପଦତଳେ
ବଳୟରେ – ବିନ୍ଦୁରେ
ଆମର ଏ ଯାତ୍ରାର କ'ଣ ସମାଧି ଓ ଶେଷ ?

ଦୂରାଗତ ଦୁଇଜଣ ଏ ବଣିକ ବହୁଦୂର କଳିଙ୍ଗ ପ୍ରାନ୍ତରୁ
ବାଣିଜ୍ୟର ସନ୍ଧାନରେ ଯାତ୍ରା କେବେ କରିଥିଲେ
ସମୁଦ୍ର ପନ୍ତାର ବାଲି କେତେ ନଦୀ ବନ୍ୟାଞ୍ଚଳ
କେତେ ଗିରି ସଂକଟର ହିଂସ୍ର ଅନ୍ଧାରରେ
ଏମାନେ ତ ଆସିଥିଲେ ପାରି ହୋଇ ଦୀର୍ଘ ଦିନ
ରାତିର ଆତଙ୍କ
ସେମାନେ ବି ଆସିଥିଲେ ଖୋଜି ଖୋଜି ଏ ଏକକ ନିଷ୍ଠୁର ମୁହୂର୍ତ୍ତ
ଯେଉଁଥିରେ ମୃତ୍ୟୁ ହେଲା ଯୋଜନ ଯୋଜନ କ୍ଳାନ୍ତି
ବହୁ ଜନ୍ମ ଜନ୍ମାନ୍ତର ଶୋଷ ।
ସେ ଶ୍ୱେତ ହ୍ରଦ ତ ଏତେ ରୂପବାନ
ସେ ପଦ୍ମର ଅସଂଖ୍ୟ ପାଖୁଡ଼ା
ଅଶ୍ୱସ୍ଥର ତାଳ ପତ୍ର ଛାଇ ଘେରି ରଙ୍ଗ ତାର
ଘ୍ରାଣ ତାର
ସମୟର ନିଃଶବ୍ଦ ବ୍ୟାପ୍ତିରେ ।

ବାଣିଜ୍ୟରୁ ଯେଉଁ ଯାତ୍ରା ପ୍ରଥମେ ଆରମ୍ଭ ହେଲା
ସେ ଯାତ୍ରାର ଅନ୍ତର୍ଦାହ ପଥଶ୍ରମ ଶେଷ ହେଲା ଯେବେ
ତପସ୍ସୁ ଉଲ୍ଲିକ ଦୁଇ ବ୍ୟବସାୟୀ ଅନ୍ତର୍ହିତ ହେଲେ ଯେବେ
ଦିଗ୍‌ବଳୟ ତଳେ
ସେ ଦିଗ୍‌ବଳୟ ସବୁବେଳେ ଦୃଶ୍ୟମାନ
ନିର୍ଜନ ନିସ୍ତବ୍ଧ ଏହି ରାସ୍ତାର ଏ ଦୁର୍ନିର୍ବାର ପରିବ୍ୟାପ୍ତି
ବ୍ୟକ୍ତିହୀନ ପଶୁପକ୍ଷୀ ବୃକ୍ଷଲତା ଅବୟବ ହୀନ
ଦୁଃଖ ଓ କାମନା ସହ ସେହି ଗତ ସାନ୍ତ୍ୱନାର ଶେଷ ହୁଏ
ଜନ୍ମ ମୃତ୍ୟୁ ରୋଗ ବ୍ୟାଧି ବାର୍ଦ୍ଧକ୍ୟର ଅସ୍ପଷ୍ଟ ଛାଇରେ

ସେ ବାଟ ନିର୍ଜନ ରହେ ସବୁବେଳେ
ଯଦି ବା ଅହରହ ଯାତାୟାତ ଏଠି ବହୁ ଅସଂଖ୍ୟ ଓ ଅସ୍ପଷ୍ଟ ଛାୟାର ।

ଏ ମହା ଗ୍ରୀଷମ ଋତୁ ବୈଶାଖର ଶେଷ
ଏଠି ଝାଞ୍ଜି ପବନରେ ଅସ୍ତବ୍ୟସ୍ତ ଗଛ ପତ୍ର ଲତା ଗୁଳ୍ମ ଯେତେ
ଏଠି ତ ଅଜସ୍ର ଶୋଷ ଥୁଣ୍ଟା ଗଛ ଝାଡ଼ ଜଙ୍ଗଲରେ
ପାଣି ତ ଦୂରର କଥା ମୃଗତୃଷ୍ଣା ଦେଖାଯାଏ ନାହିଁ

ଆମର ଚାଲିବା ନିଶା କିନ୍ତୁ ଥିଲା
ଆମେ ସବୁ ଆସିଥିଲୁ ବହୁତ ପଛରେ ଛାଡ଼ି
ସହରର ବ୍ୟସ୍ତ ରୁଟିନ
ଲାଇବ୍ରେରୀ ସିଲାବସ୍ ଥିସିସ୍ ଆଉ ଡିସାର୍ଟେସନ୍
ମହମବତୀ ଆଲୁଅରେ ରାତି ଅଧ କଫିର ଫ୍ଲେଭର
ଆମର ମନରେ ଥିଲା ନ୍ୟାୟ ଆଉ ମିମାଂସାର କେତେ ଯୁକ୍ତି
ପିଠିରେ ଆମର
ଡିଗ୍ରୀର ପ୍ରବଳ ବୋଝ
ହୃଦୟରେ ଅହଂକାର
ନିଶାସକ୍ତ ବିରକ୍ତି ଓ ମ୍ରିୟମାଣ କ୍ଷୋଭ
ଚାଲିବା ନିଶାରେ ତେଣୁ କଣ୍ଟା ଝାଡ଼ ଜଙ୍ଗଲରେ
ଆମେ ଖୋଜି ଚାଲିଥିଲୁ ମୃତ୍ୟୁ କଣ ? ସୃଷ୍ଟି କଣ ?
ବିଲୟ ବିଲୋପ କଣ ?
ଏ ସବୁ ପଛରେ କା ହାତର ଓ ମସ୍ତିଷ୍କର ପ୍ଲାନ୍ ଡିଜାଇନ୍...

ଏଠି କିନ୍ତୁ ଏ ରାତିରେ ଯେଉଁଠାରେ ଶୋଷ ନାହିଁ ପାଣି ନାହିଁ
ଭୋକ ପାଇଁ ଅନ୍ନ ନାହିଁ
ଥୁଣ୍ଟା ଗଛ ଡାଳ ତଳେ ଛାଇ ନାହିଁ
ରୁହ ରୁହ ଅଳ୍ପ ରୁହ
ମୋ ପାଖେ ସୁସ୍ୱାଦୁ ଫଳ ଝରଣାର ପାଣି-
ମୃତ୍ୟୁ କଣ ? ସୃଷ୍ଟି କଣ ? ବିଲୋପ ଓ ବିଲୟର ପ୍ରଶ୍ନ କଣ ?
ଉତ୍ତରରେ କହ କେଉଁ ରହସ୍ୟର ମିଳିବ ମିମାଂସା ?

ଆମେ ସବୁ ସ୍ଥିର ହେଲୁ
ଶୋଷ ତ ନଥିଲା ସେଠି
ଭୋକ ତ ନ ଥିଲା
ଗାଡ଼ି ମଟର ଶବ୍‌ଦରେ ସୃଷ୍ଟି ସ୍ଥିତି ବିଲୟର ପ୍ରଶ୍ନ ବା କେଉଁଠି ?...

*(ପରିକଳ୍ପିତ ଦୀର୍ଘ କବିତା : ଅସଂପୂର୍ଣ୍ଣ)*



# ମୋର ସବୁ ସ୍ନେହ

ମୋର ସବୁ ସ୍ନେହ ଓ ଶୁଭେଚ୍ଛା ଆଜି ସମସ୍ତଙ୍କ ପାଇଁ
ମୋର ସବୁ ସ୍ନେହ ଆଜି ଯେଉଁମାନେ ସାନ ମୋ ପାଖରେ
ଯେଉଁମାନେ ବର୍ଷିୟାନ୍ ମୋ ଠାରୁ ସମ୍ମାନପୂତ ସେମାନଙ୍କ ପାଇଁ
ମୋର ସବୁ ନମସ୍କାର ଶ୍ରଦ୍ଧା ଓ ପ୍ରଣାମ
ମୋର ସବୁ ଅନ୍ତର୍ଦାହ ସ୍ମୃତି ଆଉ ଶ୍ରାନ୍ତ ମନ ଆପଣଙ୍କ
ପାଦତଳେ ଆପଣଙ୍କ ଏ ପୃଥିବୀ
ପୁଣି ଥରେ ଯେତେବେଳେ କରେ ତାର ଯାତ୍ରାର ଆରମ୍ଭ

ହିସାବ ନିକାଶ ମୋର କରିବାର କିଛି ନାହିଁ
ସବୁତ ପୁରୁଣା କଥା
ବୁଗେନ୍‌ଭିଲ୍ଲାର ଲାଲ ଗୋଲାପର ଫୁଟିବା ଓ ଝଡ଼ିବାର ଅସ୍ପଷ୍ଟ ଆଘ୍ରାଣ
ସବୁତ ପୁରୁଣା କଥା ଏ ବର୍ଷର ଶେଷ ପୁଣି ଅନ୍ୟ ନୂଆ ବର୍ଷ ଆରମ୍ଭରେ
ଆଜି ମୋର ଚେଷ୍ଟା ନାହିଁ ଏକଯୁଟ କରିବାକୁ, ଆସିଚି ଯାଇଚି ଯାହା
ସ୍ମୃତି ସବୁ - ବ୍ୟଥା ଓ ବିଦ୍ୱେଷ ଯେତେ, ହସ ଓ ଯନ୍ତ୍ରଣା ଯେତେ
ଦିନ ବେଳେ ଦେଖିଥିବା ସ୍ୱପ୍ନ କେତେ,
ରାତିର ନିଦରେ ଯେତେ ଆକାଂକ୍ଷା ଓ ଅସମ୍ମାନ
ସବୁ ତ ପୁନରାବୃତ୍ତି କେତେ ବର୍ଷ ଶେଷ ଆଉ କେତେ ନୂଆ ବର୍ଷ ଆରମ୍ଭରେ
କେତେ ଲୋକ ଗଲେ ଚାଲି -
ଆମର ଏ ଦାସ୍‌ବାବୁ, ସାର୍ ମୋର, ପ୍ରାଣବନ୍ଧୁ ବାବୁ
ଏ ବର୍ଷ ବି କେତେ ଯିବେ - ମୁଁ ହୁଏତ ଯିବି କେତେ ବେଳେ
ତେଣୁ ବର୍ଷ ଆରମ୍ଭରେ ମୋର ସବୁ ସ୍ନେହ ଭକ୍ତି ପ୍ରଣାମର ଉପହାର
ଗ୍ରିଟିଂ କାର୍ଡ଼ ଚିଠି ପୁଣି ଫୋନ୍ କଲ୍
ପ୍ରଥମ ଦିନର ଏହି ଆସନ୍ନ ସୂର୍ଯ୍ୟାସ୍ତ ପରେ ମିଶି ଯିବ, ଲୀନ ହେବ
ଆସୁଥିବା ଆଉ ଏକ ନୂଆ ବର୍ଷ, ନୂଆ ଯୁଗ
ବ୍ୟଗ୍ର ଅପେକ୍ଷାରେ...

ମରିବା ଖବର ସବୁ ସନ୍ଧ୍ୟା ବେଳେ ପ୍ରାୟ ଆସେ
ଦିନର ମୂମୂର୍ଷ ମୁହଁ ଯେତେବେଳେ ରକ୍ତହୀନ ଆଚ୍ଛନ୍ନ ଧୂସର
ସେତେବେଳେ ଏ ଖବର ଅକସ୍ମାତ ପ୍ରାଣାନ୍ତ ଆଘାତ ଆଣେ
ବିଶ୍ୱାସରେ ନିଜର ଅସ୍ତିତ୍ୱ ନେଇ ଘେରି ଆସେ ପ୍ରଶ୍ନ ସନ୍ଦେହର

ସଂଦେହର ଅତଳରେ ଶୁଖିଲା ବାଦାମି ପତ୍ର ଝଡ଼େ ଯେବେ
ଚଇତ୍ର ଖରାରେ
ଫାଲ୍‌ଗୁନ ଓ ଚୈତ୍ରରେ କଅଁଳେ ବହୁତ ପତ୍ର
ଝଡ଼ିଯିବା ଅପେକ୍ଷାରେ
ଗାଢ଼ କଳା ଦାଗ ସବୁ ଆସ୍ତେ ଆସ୍ତେ କ୍ରମେ କ୍ରମେ ଧଳା ହେଲା ପରି
ସବୁଥିରେ କ୍ଷୟ ଆସେ
ଫୁଲକଢ଼ ପଶୁପକ୍ଷୀ ମଣିଷ ଦେହରେ
ସେ କ୍ଷୟର ଶେଷ ହେଲେ ଫୁଲ ଝଡ଼େ ପତ୍ର ଝଡ଼େ
ମଣିଷ ବି ଝଡ଼ିଯାଏ
ବହୁ ବନ୍ଧୁ ପରିଚିତ ଲୋକ କେତେ ଏବେ ତ ନିଶ୍ଚିହ୍ନ ।
ନିଶ୍ଚିହ୍ନ ଏ ଅତୀତର ସ୍ମୃତି କାହିଁ -
ଲେଖାରେ ବା କାଗଜରେ ସ୍ମୃତି ସଭା ସାହିତ୍ୟ ସଭାରେ
ଏହି ସ୍ମୃତି ଚାରଣରେ ରକ୍ତ ନାହିଁ ମାଂସ ନାହିଁ
ବଞ୍ଚିବାର ଉଲ୍ଲାସ ବା ଯନ୍ତଣାର ସ୍ପନ୍ଦନ ତ ନାହିଁ

ତେଣୁ ବନ୍ଧୁ, ପ୍ରିୟତମା, ସାଥି ମୋର ବର୍ଷର ବିଦାୟ ପୁଣି ଅନ୍ୟ ଏକ
ବର୍ଷ ଆସିବାରେ
ମୋର ଏହି ଗ୍ରୀଟିଂ କାର୍ଡ ମୋର ଏହି
ଅଭିନନ୍ଦନରେ
ମୋ ମାଂସର କ୍ଷତ ସବୁ ମୋ ପ୍ରାଣର ଅବଶୋଷ ଯେତେ
ତୁମର ମାଂସର କ୍ଷତ ତୁମର ପ୍ରାଣର ସବୁ ହାହାକାର ଧରି
ଆଜି ହେଉ ଏକଯୁଟ
ଏ ବର୍ଷ ଆରମ୍ଭ ହେଉ କ୍ଷୁବ୍ଧ ଏହି ଚେତନାର ସମ୍ମିଶ୍ରଣ
ଅକଥିତ ବ୍ୟଥା ଧରି
ତୁମର ଓ ମୋର ଏହି ଦଗ୍ଧ ଚେତନାରେ



୧୯୨୪-୨୦୦୪

ଗୁରୁପ୍ରସାଦ ମହାନ୍ତି ଆଧୁନିକ ଓଡ଼ିଆ କବିତାର ଅନ୍ୟତମ ପ୍ରବାଦ ପୁରୁଷ। ସଂଖ୍ୟା ସଳ୍ପ ହେଲେ ମଧ୍ୟ ତାଙ୍କ କବିତା ବର୍ତ୍ତମାନ କାଳର କବି, ପାଠକ ପାଠିକା ଓ ସର୍ବୋପରି ଓଡ଼ିଆ ସାହିତ୍ୟକୁ ଯେପରି ଭାବରେ ପ୍ରଭାବିତ କରିଛି ତା'ର ପଟାନ୍ତର ନାହିଁ। ପ୍ରଚାର ବିମୁଖ ଏଇ କବି ତାଙ୍କର 'ସମୁଦ୍ରସ୍ନାନ' ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି । 'ଗୁରୁପ୍ରସାଦ କବିତା' ବହିରେ ତାଙ୍କର ଲିଖିତ ସମସ୍ତ କବିତା ସ୍ଥାନ ପାଇଛି ।


ISBN 81-87467-26-6